# ଦୁତୀୟା ଓଷା

ବା

## ଦୁଅ ଜିଉନ୍ତିଆ ଓଷା

ଦୁତିୟା ଓଷାର ମହିମା ଯେତେ ।
କଥା ପ୍ରସଙ୍ଗରେ କହିବା କେତେ ॥

ପ୍ରକାଶକ- **ଧର୍ମଗ୍ରନ୍ଥ ଷ୍ଟୋର**



ପ୍ରାପ୍ତିସ୍ଥାନ - ଧର୍ମଗ୍ରନ୍ଥ ଷ୍ଟୋର
ପ୍ରୋପ୍ରାଇଟର - ଶ୍ରୀ ବିଦ୍ୟାଧର ସାହୁ
ଅଲିଶାବଜାର କଟକ-୨
ଫୋ:ନଂ—୨୪୭୯୬

**ମୂଲ୍ୟ—ପଚସ୍ତରୀ ପଇସା ମାତ୍ର**

### ବୃହତ୍

## ଦୁତିଆ ଓଷା

### ବା

# ଦୁତିବାହନ କଥା

## ପ୍ରଥମ ଛାନ୍ଦ

ଜୟ ତୁ ଜୟ ଧର୍ମ ନିରଞ୍ଜନ । ଜୟ ଜୟ ଧର୍ମ ଦୁତିବାହନ । ଯାହା ନାମ ଗୋଟି ସଂସାରେ ସାର । ଶୁଣିଲେ ନାନା ଦୋଷ ହୋଇ ପାର ॥ ଦୁତିଆ ଓଷାର ମହିମା ଯେତେ । କଥା ପ୍ରସଙ୍ଗରେ କହୁଛୁ ଗୀତେ । ବାଞ୍ଛା ମଢ଼ୁଛୁ ଅବିବାହୀ ନାରୀ । କାଳପୁରୁଷ ଯେଠହେଲା ସ୍ତିରୀ ॥ କୁଳ ନାଶକୁ କାକବାଞ୍ଝା ମିଳେ । ଚନ୍ଦ୍ର ଗ୍ରହଣ ଫଳବନ୍ଧ୍ୟା ଠୁଲେ ॥ କୁଳଟା ସ୍ତିରୀ ଯେ ଅକର୍ମୀ ନାରୀ । ଏ ଓଷା କଲେ ଏତେ ଦୋଷ ତରି ॥ ଅତି ଦୁର୍ଲ୍ଲଭରେ ଦୁତିଆ ଓଷା । ପାଶନ୍ତି ଲୋକ କରନ୍ତି ସହସା ॥ ଆନ ଓଷାରେ ନାହିଁ ଏତେ କାମ୍ୟା । ଫଳ ମିଳେ ଯେହୁ କରଇ ନିଷ୍ଠା । ନିଷ୍ଠାରେ ଯେ ଜନ ଓଷା କରିବ । ଧନ ଜନ ଗୋପ ଲକ୍ଷ୍ମୀ ଲଭିବ ॥ ଦୁତିଆ ଓଷାର ଫଳ ବିଶେଷ । ଗୀତେ କହିଲେ ପୁରୁଷୋତ୍ତମ ଦାସ ॥

—o—

## ଦ୍ୱିତୀୟ ଛାନ୍ଦ

ଆଶ୍ୱିନ କୃଷ୍ଣ ସପ୍ତମୀ ଦିନ । ଏକବାର କରି ଓଷା ବିଧାନ ॥ ନାନା ବ୍ୟଞ୍ଜନ କରିଣ ସମ୍ପୂର୍ଣ୍ଣ । କ୍ଷୀରି ପିଠା ଆଦି ଘୃତାକ୍ତ ଅନ୍ନ ॥ ଏକା ଲେଉଟିଆ ଶାଗକୁ ଛାଡ଼ି । ସର୍ବ ପରିବା ଯେ ଯାହାକୁ ଲୋଡ଼ି ॥ ଏମାନେ ସଂଯୋଗ କରି ଥୋଇବ । ସୁଗନ୍ଧି ହୋଇଣ ସ୍ନାନକୁ ଯିବ । ଦେଖିଣ ଉତ୍ତମ ନଦୀ

ପୋଖରୀ । ତୋଠ ଓଳଆଇ ନର୍ମଳ କରି ॥ ବାଲିରେ ଗଲ ଶିଆଳ ଗଢ଼ିବ । ଦୁହିଁଙ୍କ ଦୁଇ ଦାନ୍ତକାଠି ଦେବ । ଅପା-ମାରଙ୍ଗର ସେ ଦାନ୍ତ କାଠି । ଆଉ କାଠିମାନ ବଧି ନୁହେଁଟି ॥ ନାଉଲଗା ଜହ୍ନି କାକୁଡ଼ିମାନ । ତାହାଙ୍କ ଉପରେ କରି ମଣ୍ଡନ ॥ ନାନା ଚନ୍ଦ ପୁଷ୍ପେ ତାଙ୍କୁ ପୂଜିବ । ବହୁତ ପ୍ରକାରେ ସ୍ତୁତି କରିବ ॥ ସୂର୍ଯ୍ୟ ଦେବତାଙ୍କୁ ପ୍ରଣାମ କରି । ମନର ବାଞ୍ଛା ମନରେ ସ୍ମରି ॥ ପଛକୁ ଲେଉଟି ଚାହିଁବ ନାହିଁ । ଘରକୁ ଆସିବ ମଉନ ହୋଇ ॥ ପିନ୍ଧିବ ଆସି ସୂଷ୍ଟୀନ ବସନ । ସିନ୍ଦୂର କଜ୍ଜ୍ୱଳ ଆଉ ଚନ୍ଦନ ॥ ଯାହାର ଯେ ଥିବ ଯେମନ୍ତ ଦ୍ରବ୍ୟ । ନୂଆ ବସନ ତ ଅଣ୍ଡା ଦୁର୍ଲ୍ଲଭ । ହସ୍ତମନେ ସବୁ ଯତନ କରି । ଷୀରି ପିଠା ଆଦ ସମ୍ଭାରି ଭରି ॥ ସକଳ ଦ୍ରବ୍ୟ ରାନ୍ଧିଥିବ ଯାହା । ସ୍ଥାନ ଲିପିପୋଛି ବାଢ଼ିବ ତାହା । ଦୁତିବାହନକୁ ନୈବେଦ୍ୟ ଦେବ । ତଦନ୍ତେ ନଳ ଶିଆଳ ପୂଜିବ ॥ ବନ୍ଧୁ ବାନ୍ଧବଙ୍କୁ ଡାକି ଭୁଞ୍ଜାଇବ । ପୁଣ ଗୃହସ୍ଥଙ୍କୁ ସେମାନ ଦେବ ॥ ବର୍ଷରେ ଏହି ପ୍ରକାରେ କରିବ । ଦଶାରେ ଦୁତିବାହନ ପୂଜିବ ॥ ଏହି ରୂପେ ଏକବାରକୁ କହ । ବର୍ଷ ପାଳିଲେ ଯେ ଓଷା ଆଚରି ॥ ଦ୍ୱିତୀୟ ଛାନ୍ଦ କଥା ହେଲା ଶେଷ । ଗୀତେ ଭଣିଲେ ପୁରୁଷୋତ୍ତମ ଦାସ ॥

## ତୃତୀୟ ଛାନ୍ଦ

ଅଷ୍ଟମୀ ଦିନ ପ୍ରଭାତକୁ ଉଠି । ଗଲ ଶିଆଳଙ୍କୁ ଯାଇଣ ଭେଟି ॥ ବିଧିବିଧାନେ ସ୍ନାହାନ ସାରିବ । ସେ ଦିନଯାକ ସେ ନିର୍ଜଳ ହେବ ॥ ସନ୍ଧ୍ୟାକାଳରେ ପବିତ୍ର ସ୍ଥାନରେ । କୋଠ ସଜାଡ଼ି ଆନନ୍ଦ ମନରେ ॥ ଜାଣିବା ଲୋକ କୋଠି ସଜାଡ଼ିବ । ନ ଜାଣିବା ଲୋକ ଦଣ୍ଡ ପାଇବ । ଗୁରି କୋଣିଆ କରିଣ ଖୋଳିବ । ମଣ୍ଡି ଘାପଦଣ୍ଡି ପରି କରିବ ॥ ଦୈର୍ଘ୍ୟ ପ୍ରାୟେ ଦୁଇହାତେ ପ୍ରମାଣ । ଏଥିରୁ କେବେ ନ କରିବ ଆନ ॥ କଣି

ଷୋଡଶ କୁଞ୍ଜ ସଜ କରିବ । ତୁଳସୀ ବୃକ୍ଷକୁ ମଧ୍ୟେ ରୋପିବ ॥ ଉପରେ ଚନ୍ଦୁଆ ଗୋଟିଏ ବାନ୍ଧି । କଇଁଫୁଲ ମଣ୍ଡି ପୁରାଇ ସନ୍ଧି ॥ କୋଠି ମଧ୍ୟରେ କଦଳୀ ଲଗାଇ । ଦୁତିବାହନ ବର୍ଣ୍ଣ ଚିତ୍ରକୁ କରିବ ॥ ବାଙ୍ଖୀ ମଣ୍ଡଳୁ ପୁଷ୍ପ ଦୋଷ ପାଇ । ଦର୍ପଣେ ସ୍ଥାପିବ ବ ଡାଳ ନେଇ ॥ ବାସ ଯୁକ୍ତ ଡାଳ ଆଣି ଧରିବ । ଯତନେ ରୋପିବ ଯହିଁ ପାଶର । ନାନାଦି ବର୍ଣ୍ଣରେ ମୁରୁଜ କରି । ସୂର୍ଯ୍ୟ ଦେବଙ୍କୁ ଲେଖିବ ସୁନ୍ଦର ॥ ଚାଲ ଶିଆଳକୁ ରଖି ଉତ୍ତର । ପଶ୍ଚିମରେ ଦୁତିବାହନ ପୁର । ସକଳେ ପିନ୍ଧଣ ଶୁକ୍ଳ ବସନ ସିନ୍ଦୂର କଜ୍ଜଳମାନ ଦେଇଣ । ଉତ୍ତମ ରୂପେ ସୁବେଶ ହୋଇବ କୋଠି ସମୀପରେ ଯାଇଁ ବସିବ । ଘୃତ ଦୀପ ଗୋଟି ଜାଳି ଜାଗର । ସମ୍ବାଦ ରଖିବ ପୂଜା ସମ୍ଭାର ॥ ନଅଁ ଲୁହା ଯହିଁ ଲାଗିବ ନାହିଁ । ପୂଜା ଦ୍ରବ୍ୟମାନ ଥିବ ଥୁଆଇ ॥ ଆଖୁ କନ୍ଦମୂଳ ନଡ଼ିଆ ମୂଗ । ପାଚିଲା କଦଳୀ ସୋଲ୍ଲା ନାରଙ୍ଗ ॥ ବଡ଼ଚଣା ମୂଳା ପାନ କାକୁଡ଼ି । ମକା କରମଙ୍ଗା ନଅରକୋଳି ॥ ଓଆଁଳ ଜାମ୍ବୁଲ ଲେମ୍ବୁ କମଳା ॥ କେରଣ୍ଡା କୋଳି ସେ ପଦ୍ମ ପୁଷ୍କର ॥ ଜହ୍ନି କଖାରୁ ଆଦି କରି ଯେତେ । ଏକୋଇଶ ଦ୍ରବ୍ୟ ଏହି ସଂଯୁକ୍ତେ ॥ ହୁଙ୍ଗୁଡ଼ା ଗୋଟିକେ ସକଳ ଭରି । ନୂଆ ବସନକୁ ପାହାଡ଼ କରି ପୂଜା ଦେବାଇ ମିଳି କୋଠିପାଖେ ॥ ବସିବେ ସକଳେ ମନ ହରଷେ ॥ ଭଣ୍ଡାର ଘରରେ ହୁଙ୍ଗୁଡ଼ାମାନ । ସଜାଡ଼ି ରଖିବ ସବୁ ଯତନ । ଯେଉଁ ମାନଙ୍କର ପାହାଡ଼ା ଥିବ । କୋଠି ଦ୍ୱାରପାଖେ ବେଢ଼ାଇ ଦେବ ॥ କଉଡ଼ି ଏକୋଇଶ ଗଣ୍ଡା ଗୁଆ । ଆଗ କୋଠିରେ ପକାଇବ ତାହା ॥ ଏଥି ଓଷା କଲେ ଫଳ ନ ପାଇ । ଖଣ୍ଡନ କଲେ ଧର୍ମ ଖଣ୍ଡ ହୋଇ ॥ ଦୁତିବାହନ ବୃତ୍ତାନ୍ତ ସଂକ୍ଷେପ ପ୍ରସ୍ତାବେ କହେ ପୁରୁଷୋତ୍ତମ ଦାସ ॥

—*—

# ଚତୁର୍ଥ ଛାନ୍ଦ

ଏଥୁ ଅନନ୍ତରେ ସାନନ୍ଦେ ନାରୀ । କଥା ଶୁଣିବ ଏକ ମନ କରି ॥ କୌଣସି ଆଡ଼କୁ ମନ ନ ଦେବ । କଥା ଶେଷରେ ହୁଳହୁଳି ଦେବ ॥ ଏଥିଉତ୍ତାରୁ ଶୁଣ ସେହି କଥା । ଦୁତି-ବାହନଙ୍କ ଯେତେ ବ୍ୟବସ୍ଥା ॥ ସୂର୍ଯ୍ୟମଣ୍ଡଳ ବୋଲି ନଗ୍ର ଏକ । ସେ ନଗ୍ରେ ବସନ୍ତି ଅନେକ ଲୋକ ॥ ଅଷ୍ଟଘାଟକଙ୍କ ଆଦି ଚରଜା । ସୁରକ୍ଷିତ ବୋଲି ସେ ରାଜ୍ୟ ରଜା ॥ ନାନା ଅଇଶ୍ୱର୍ଯ୍ୟ ବଡ଼ଇ ଧନ । ତାହାର ବଢ଼ଇ ନାହିଁ ସନ୍ତାନ । ସେ ନଗ୍ରେ ଦୁର୍ଲ୍ଲଭ ନାମେ ବ୍ରାହ୍ମଣୀ । ବାଳୁତ ବିଧବା ଅଟେ ସେ ପୁଣି ॥ ରୂପ ଗୁଣରେ ସୁଲକ୍ଷଣା ଶୋଭା । କି ଅବା ପାଟଙ୍ଗ ରତି କି ରମ୍ଭା ॥ ସୂର୍ଯ୍ୟଙ୍କୁ ତା ମନେ ବଡ଼ ଭକତି । ସୂର୍ଯ୍ୟ ଜପ, ସ୍ତୁତି କରଇ ନିତି ॥ ଅକର୍ମେ ନ ଥାଇ ସୁକର୍ମେ ଥାଇ । ଉଚିତ ଦୁଃଖ ଯେ ତାହା ପାଳଇ ॥ ସପତ୍ନୀ ନାମେ ଯେ ତାର ପୋଇଲି । କୁଟା କରନ୍ତି ରଣ୍ଡି ଲୋକ ବୋଲି ॥ ଏସନେ ଚଳିଁ କିଛି ଦିନଗଲା । ଆଶ୍ୱିନ ମାସ ପିତୃପକ୍ଷ ହେଲା ॥ ଶ୍ରାଦ୍ଧ କରିବାକୁ ସବୁରି ମନ । ସୁରକ୍ଷିତ ରଜା କହେ ବଚନ ॥ ମନ୍ତ୍ରୀକି ଲୁହିଁ ରଜା ଆଜ୍ଞା ଦେଲେ । ଆମ୍ଭେ ଯେ ଶ୍ରାଦ୍ଧ କରିବା ବୋଇଲେ ॥ ଧାନକୁଟା ଦେବେ କୁଟକୁଣିକି । କୁଟା ଧାନହିଁ ଦେଲେ ବ୍ରାହ୍ମଣୀକି । ରଜ ନଅରେ କୋଠ ଖଦା ହେବ । ଘରବନେ ସବୁ ଚାଉଳ ଦେବ ॥ ଛଟକୁ ସିନା ସବୁରି ଭରସା । ଦଇବରେ କଲା ଘୋର ବରଷା କେହି ନକୁଟିଲେ କୁଟାର ଧାନ । ବ୍ରାହ୍ମଣୀର ହେଲା ଅଧୈର୍ଯ୍ୟ ମନ ॥ କୁଟା ଚାଉଳ ରାଜା ଘରେ ଚୋରା । କେମନ୍ତ ମୁଁ ଦେବି ନ ହେଲା ଖରା ॥ ଚାଉଳ ନ ଦେଲେ ଦଣ୍ଡିବ ନେଇ । ସତ୍ୟ ମନାସିଲା ସୂର୍ଯ୍ୟଙ୍କୁ ଲୁହିଁ । ମୋ ପତି ହେବ ଧର୍ମ ନିରଞ୍ଜନ

ଶୁଖାଇ ଦିଅ ମୋ ଉଷୁନା ଧାନ ॥ ସତ୍ୟ ସତ୍ୟ ଯହୁଁ କଲା ବ୍ରାହ୍ମଣୀ । ଆକାଶେ ଚଳି ଯାନ୍ତେ ଦିନମଣି ॥ କିରଣ ତେଜେ ଶୁଖାଇଲା ଧାନ । ସତ୍ୟ କରିଛୁ ଦେବ ନିରଞ୍ଜନ ॥ ଶୁଖିଲା ଧାନକୁ କୁଟିଲା ନେଇ । ଅଜାମାନେ ଛନ୍ତି ସବୁ ଉପେଇଁ ॥ ବ୍ରାହ୍ମଣୀ ସତ୍ୟ ଶୁଣିଛନ୍ତି ସୂର୍ଯ୍ୟ । କାମ ଆରତେ ନ ରହଇ ଧୈର୍ଯ୍ୟ ॥ ବୁଡ଼ିଲା ବେଳ ସେ ହୋଇଲା ଗତ । ବ୍ରାହ୍ମଣୀ ଘରକୁ ସୂର୍ଯ୍ୟ ଚଳନ୍ତି ॥ ଏମନ୍ତ କୃତ୍ୟ ସେ ବ୍ରାହ୍ମଣୀ କଲା । ସତ୍ୟ କରି ପୁଣି ନିସତ ହେଲା । ସତ୍ୟ କରିଛୁ ଆସିବେ ଅବଧି । ମନେ ବିଚୁରିଲା କପଟ ବୁଦ୍ଧି ॥ ସପ୍ତମୀ ନାମେଣ ତାହାର ଦାସୀ । ସୁବେଶ ତାକୁ କରାଇଲା ବସି ॥ ନାନା ଅଳଙ୍କାର ଭୂଷଣ କରି । ପାଟ ଉପରଣ ପାଟେ ପହ୍ନରି ॥ ଯେଉଁ ଖଟେ ଶୋଇଥାଏ ବ୍ରାହ୍ମଣୀ । ତହିଁରେ ତାକୁ ଶୁଆଇଲା ଆଣି ॥ ପୋଇଲା ଶୁଅଇ ଯେବଣ ଘରେ । ବ୍ରାହ୍ମଣୀ ଯାଇ ଶୋଇଲା ତହିଁରେ ॥ ଆଗତ କରି ଦାସୀକି ବୋଲଇ । ପୁରୁଷ ଆଇଲେ ଉଠିବୁ ନାହିଁ । ହୁଙ୍କାର କରି ନ ଖୋଲିବୁ ତାଙ୍କୁ । ମାଗିଲା ମାତ୍ରକେ ଦେବୁ ଦେହକୁ ॥ କିଛି ନ ବୋଲି ତୁନି ହୋଇଥିବୁ । ଯାହା କହିବୁ ମନରେ ରଖିବୁ ॥ ନିଶା ନିର୍ଜନରେ ଶୋଇଲେ ଯାଇ । ବିଜେ କଲେ ଗ୍ରୀଷ୍ମ ଦେଖାଇ ସାଇଁ ଦିନକର ନାଥ କାମେ ଆରତେ । ଏକେତ ବ୍ରାହ୍ମଣୀ କରିଛୁ ସତ୍ୟ ॥ ନାନା ରସବନ୍ଧେ କରିବେ କେଳି । ବିଚାରି ବ୍ରାହ୍ମଣୀ ମଢରେ ମିଳି ॥ ଦେଖିଲେ ସେଠାରେ ବ୍ରାହ୍ମଣୀ ନାହିଁ । ପୋଇଲା ଶୋଇଛି ସୁବେଶ ହୋଇ ॥ ସେ ଅନ୍ତର୍ଯ୍ୟାମୀଙ୍କ ଉଦାର ନାହିଁ । ଦାସୀ ବୋଲି କରି ଚିହ୍ନିଲେ ତହିଁ ॥ ଏତେ ବିଚାରି ବାହୁଡ଼ିଲେ ବେଗ । ଆମ୍ଭେ କି ଛୁଇଁବା ଦାସୀର ଅଙ୍ଗ । ମଦନେ ଉଛନ୍ନ ହେଉଛି ଅଙ୍ଗ । ହେଣୁ ହେଉ ନାହିଁ କାମିନୀ ସଙ୍ଗ ॥ ସେଣୁ ବ୍ରାହ୍ମଣୀ ଅଗଣା ଭିତରେ । ପ୍ରସାଦ କଲେ କେଉଟିଆ ମୂଳେ । ଯେତେକ ବୀର୍ଯ୍ୟ ଉତ୍ସର୍ଗରେ

ଥିଲ । ପ୍ରଯାବ ସଙ୍ଗତେ ଗଚ୍ଛେ ପଡ଼ିଲ ॥ ନବ୍ଡଶ ପ୍ରଭୁ ଚନ୍ଦନ୍ଙ୍କ ଭୁବନ । ଶ୍ରୀପୁରୁଷୋତ୍ତମ କହଇ ବଚନ ॥

—୦—

## ପଞ୍ଚମ ଛାନ୍ଦ

ଏଥୁ ଅନ୍ତେ କଥା ଶୁଣ ସୁଜନ । ପୁଣି ନଶି ପାହି ହୋଇଲା ଦନ ॥ ବ୍ରାହ୍ମଣୀ ଉଠି ଦାସୀଙ୍କୁ ପୁଛିଲା । କହ ଲୋ ଗୃହରେ କେ ଆସିଥିଲ ॥ ଦାସୀ ବୋଇଲ ମୁଁ ଜାଣଇ ନାହିଁ । ଦେଖିଲ ଘରେ ଖଗ ଥିଲ ହୋଇ ॥ ଶୁଣିଣ ବ୍ରାହ୍ମଣୀ ହେଲ ମଉନ । ପାଞ୍ଚିଲ ମୁଣ୍ଡି ହେଲ ସତ୍ୟ ଭଗ୍ନ ॥ ଦାସୀକି ଫେଡ଼ି କଣ୍ଟୁ ନ କହିଲ । ଲେଉଟିଆ ଗଚ୍ଛେ ଗର୍ଭ ରହିଲ ॥ ଏମନ୍ତେ ଗଲ ଦସ କେତୁ ଦବସ । ବ୍ରାହ୍ମଣୀ ହୋଇଲ ପାକାପ୍ରରଷ । ପଞ୍ଚମ ଦନେ ଶୁଦ୍ଧ ସ୍ନାନ କଲ । ପୋଇଲକ ଡାକ ରାଇ ବୋଇଲ । ଆହେ ସଜନୀ ଶୁଣ ତୁ ବେଗ । ଅନାବନା କର କରନ୍ତେ ଶାଗ ॥ ଏକଥା କେହି ତ ଜାଣନ୍ତି ନାହିଁ । ସେହି ଲେଉଟିଆ ତୋଳାନ୍ତି ଯାଇ ! ଯତନ କରି ଖରଡ଼ିଲ ପୁଣି । ଆନନ୍ଦେ ଖାଇଲ ତାହା ବ୍ରାହ୍ମଣୀ ॥ ଅଷପୂ ଗର୍ଭ୍ୟତ ଷପୁ ନୋହିଲ । ସତ୍ରୀ ବ୍ରାହ୍ମଣୀ ଗର୍ଭବାସ ହେଲ ॥ ଦନକୁ ଦନ ତ ପେଟ ବଢ଼ିଲ । ଭୂଠ ଘଠ କଥା ଡନ୍ତ୍ରେ ପଡ଼ିଲ । ରାଜାଙ୍କ ଶ୍ରମୁରେ ଚଢ଼ିଲ ଯାଇ । ଧରୁର ନେଲେ ଲୋକ ବରଗାଇ ॥ ରାଜା ଆଜ୍ଞା ଦେଲେ ଶୁଣ ବ୍ରାହ୍ମଣୀ । ଏତେ ଅନୀତି କଲୁ କାହିଁ ପୁଣି ॥ ରାଜା ବଚନେ ବ୍ରାହ୍ମଣୀ କହଇ । ଶ୍ରୀମା ଦେବ ସାବଧାନ ହୋଇ । ଆଶ୍ୱିନ ମାସ ପିତୃପକ୍ଷ ହେଲ । ଶ୍ରୀମବରୁ ଧାନକୁଟା ପଡ଼ିଲ ॥ ସମସ୍ତ ଘରେ ଧାନ ଦେଲେ ନେଇ । ମୋ ଘରେ ଧାନ ଅଜାଡ଼ିଲେ ଯାଇ ॥ ଧାନ ଦେଇ କରି ସେବକ ଗଲେ । ଗୃହ ଦିନକୁ କଣ୍ଠ ସେତୁ କଲେ ॥ ଏମନ୍ତେ ନଦୁଁ ଯେ ବରଷା ହେଲ । ଧାନ ଉସାଇଲ ଖରା ନ କଲ ॥

ଶୃଙ୍ଖଳ କେମନ୍ତେ ରାଜାଙ୍କୁ ଦେବ । ନଦେଲତ ମୁହିଁ ଦଣ୍ଡ ପାଇବ ॥ ଏମନ୍ତ ମୋର ଚିତ୍ତେ ଚିନ୍ତାକଲି । ସୂର୍ଯ୍ୟ ଦେବତାଙ୍କୁ ମନେ ସ୍ମରିଲି ॥ ମୁହିଁ ବୋଇଲି ଦେବତାଙ୍କ ବର । ମୋହ ଦୁଆରେ ଧାଙ୍ଗି ଖର କର ॥ ଖରାକଲେ ମୁହିଁ ଶୃଙ୍ଖଳ ଦେବ । ତୁମ୍ଭଙ୍କୁ ମୋର ଅଙ୍ଗ ସମର୍ପିବ ମୋହ ମନ ଦିନକର ଜାଣିଲେ । ସେଦିନ ମୋର ଦ୍ୱାରେ ଝରାକଲେ ॥ ଧାଙ୍ଗକୁଟିକର ଶୃଙ୍ଖଳ ଦେଲି । ରାଜାଙ୍କଠାରେ ନିର୍ଦ୍ଦୋଷୀ ହୋଇଲି ॥ ଏମନ୍ତ ଚିନ୍ତି ସେହି ରଜନୀରେ । ଦିନକର ନାଥ ବିଜୟ କଲେ । ମୋର ମନରେ ଯେ କପଟ କଲି । ତାହାଙ୍କୁ ମୁହିଁ ଅନ୍ତର ହୋଇଲି ॥ ଯୋଇଲିକ ହେ ସୁକେଶ କରାଇ । ଆପଣା ଘରେ ଶୁଆଇଲି ନେଇ ॥ ତାହା ଜାଣିଲେ ପ୍ରଭୁ ଦିନକର । କପଟ ଦେଖି ବାହୁଡ଼ିଲେ ଘର ॥ ଏମନ୍ତ ଚିନ୍ତି କେତେ ଦିନ ଗଲେ । ମୋହର ଗୃହ ସ୍ନାନ ହୋଇଲେ ॥ ଶାଗ ଖାଇବାକୁ କଲିଲି ମନ । ଲେଉଟିଆ ଶାଗ କଲି ରନ୍ଧନ ॥ ଏତେ ମାସ ହେବ ମୁହିଁ ଖାଇଲି । ଖାଇବା ମାତ୍ରେ ଗର୍ଭବାସ ହେଲି ॥ ଏତେକ ଯହୁଁ ସେ ରାଜା ଶୁଣିଲେ । ରାଣ୍ଡୀ ବ୍ରାହ୍ମଣୀକି ମେଲାଣି ଦେଲେ ॥ ତାହାର ପତି ଦିନକର ନାଥ । ଦଣ୍ଡିବାକୁ କେହି ନୁହେଁ ସମର୍ଥ ॥ ଯାହା ଗର୍ଭେ ଅଛି ଦୁତିବାହନ । ମହାତେଜ ମୂର୍ତ୍ତି ସୂର୍ଯ୍ୟର ବର୍ଣ୍ଣ ॥ ରୂପ ଦେଖିକରି ଦଣ୍ଡିଲେ ନାହିଁ । ଗ୍ରାମରୁ ଦେଲେ ବାହାର କରାଇ ॥ ବିଧବା ବ୍ରାହ୍ମଣୀ କାତର ହୋଇ । ଶ୍ରୀ ପୁରୁଷୋତ୍ତମ ଦାସ ଭଣଇ ॥



## ଷଷ୍ଠ ଛାନ୍ଦ

ଏଥି ଅନ୍ତରେ ଜନେ ଶୁଣିମା । ବିଧବା ବ୍ରାହ୍ମଣୀ ଗୁଣ ଗାରିମା ॥ ଗ୍ରାମ ବାହାରେ କଲି ଏକ ଘର । ଅପଣ୍ଡି ହୋଇଛି

ବୋଲନ୍ତି ନର ॥ ଦଶ ମାସ ପଛୁଁ ହେଲା ସମ୍ପୂର୍ଣ୍ଣ । ଆଶ୍ୱିନ କୃଷ୍ଣ
ଅଷ୍ଟମୀର ଦିନ ॥ ଆଦ୍ରାନକ୍ଷତ୍ର ଯେ ରାଶି ମିଥୁନ । ଉଦୟେ ଜନମ
ଦୁତିବାହନ ॥ ରୂପ ଗୁଣ କିସ ଉପମା ଦେବା । କାମଦେବ ପ୍ରାୟେ
ଦିଶଇ ଶୋଭା ॥ ଦିନକୁ ଦିନ ବଢଇ କୁମର । ଶୁକ୍ଳପକ୍ଷରେ ଯେହ୍ନେ
ଶଶଧର ॥ ଦିନକୁ ଦିନ ବପୁସ ବିଶେଷ । କହୁ କହୁ ହେଲା ପାଞ୍ଚ
ବରଷ । ରାଜଜେମା ଯେଣ୍ଣ ମନ୍ତ୍ରୀ କୁମର । ସାଧବ ପୁଅ କଟୁଆଳ
ବାଳ । ପଢନ୍ତି ଯେ ଚଟଶାଳୀରେ ଯାଇ । ଖଡ଼ି ଧରାଇଲେ ପୁତ୍ରକୁ
ଚହିଁ ॥ ପଢ଼ି ହେଢ଼ି ଚଳି କଟୁ ଦିବସ । ନାନାଦି ବିଦ୍ୟାରେ ହେଲା
ଅଭ୍ୟାସ ॥ ଏକ ଦିନକରେ ବସନ୍ତ ପଡ଼ି । କୁମର ହସ୍ତୁ ଖଡ଼ିଗଲା
ଉଡ଼ି । ଦୋସାଧୁ କୁମର ଥାଇ ବୋଇଲା । ଅଣବାବୁଆର ଖଡି
ଉଡ଼ିଲା ॥ ଅସଜ୍ଞ କୁମର ଜାରଜାତକା । ଏଡ଼େ ଗରବରେ ବ୍ରାହ୍ମଣ
ଟୋକା ତାହା ଶୁଣି ଦୁତିବାହନ ରୋଷ । କାନ୍ଦି କାନ୍ଦି ଘରଠାରେ
ପ୍ରବେଶ । କହୁ ନ କହିଲା ମାତାଙ୍କ ଠାରେ । ମୁହଁ ମାଡ଼ି କରି
ଶୋଇଲା ଘରେ । ମାତା ଯେ ବୋଇଲେ ଦୁତିବାହନ । କାହିଁକି
ରୁଷିଲୁ ରୁକ୍ମିଣୀଧନ ॥ ଭଙ୍ଗି ଥିବ ଯେବେ ଗଢ଼ାଇ ଦେବି । ଯାହା
ବୋଲିବୁ ତା ଖୋଜି ଆଣିବି ॥ ନୋହିଲେ କାସଙ୍ଗ କରିଛୁ କହ
ରାଜାକୁ କହି ଅଣାଇବି ଧରି ॥ ଦୁତିବାହନ କରି ମହାକୋପ ।
ବୋଇଲା ପୁଣି ନାହିଁ ମୋହର ବାପ ॥ ତୁ ଯେବେ ଅସଜ୍ଞ ତୋ ପୁଅ
ମୁହିଁ । ଧିକ ଜୀବନ ଧରିବି କିମ୍ପାଇ ॥ ବାହନ ବୋଇଲା କହିବୁ
ମିଛ । ବାପ କେ ତାକୁ ଦେଖାଅ ପ୍ରତ୍ୟକ୍ଷ ॥ ବ୍ରାହ୍ମଣୀ ବୋଇଲା ପାହୁ
ଏ ରାତି । ସକାଳେ ଦେଖିବୁ ଯେ ମୋର ପତି ॥ ଦୁତିବାହନ ଯେ
ଶୋଇଲେ ଯାଇ । ଶ୍ରୀପୁରୁଷୋତ୍ତମ ଦାସ ଭଣଇ ॥

—*—

## ସପ୍ତମ ଛାନ୍ଦ

ଏଥୁ ଅନନ୍ତେ କଥା ଶୁଣ ସୁଜନ । ଦୁତିବାହନଙ୍କ ମହିମା ମାନ ॥ ସେହିଦିନ ନିଶି ପ୍ରଭାତ ହୋଇଲେ । ପୂର୍ବଦିଗେ ସୂର୍ଯ୍ୟ ଉଦୟ ହେଲେ ॥ ମାତା ବୋଇଲେରେ କୁଳ ନନ୍ଦନ । ପିତା ତୋର ଏହି କର ଦର୍ଶନ ॥ ମାତାଙ୍କ ବଚନେ ଦୁତିବାହନ । ପିତାଙ୍କୁ ଗୁହିଁ କରନ୍ତି ଦର୍ଶନ ॥ ବିଜୟେ ସୂର୍ଯ୍ୟ ଏକା ଚକ୍ରରଥ । ପୁତ୍ରକୁ ଦେଖି ବଢ଼ାଇଲେ ହସ୍ତ ॥ ଦିନକର ନାଥ ଅତି ସ୍ନେହରେ । ପୁତ୍ରକୁ ନେଇ ବସାଇ କୋଳରେ ॥ ରତନ ମଣି କଣ୍ଠରେ ବାନ୍ଧିଲେ । ଅମୂଲ୍ୟ କୁଣ୍ଡଳ କର୍ଣ୍ଣେ ଖଞ୍ଜିଲେ ॥ ଚୁମ୍ବନ ଦେଇଣ ଅତି ସ୍ନେହରେ । କଙ୍କଣ ବଳୟ ଭିଡ଼ି ଭୁଜରେ ॥ ପୁତ୍ରକୁ ବୋଲେ ଧନ୍ୟ ମହାସୁଖ । ବୋଇଲେ କର୍ମ ତୋ ମନରେ ଦୁଃଖ ॥ ପିତା ବାଣି ଶୁଣି ଦୁତିବାହନ । ବୋଇଲେ ମୁଁ ଯେତେ ତୁମ୍ଭ ନନ୍ଦନ ॥ ଏତେ ଲୋକଙ୍କୁ ଯେ କରିଛ ପତି । ସେ କର୍ମ ସଂସାରେ ହେଲା ଅସତି ॥ ସସ୍ନେହ ବଚନେ ଦେବ ତପନ । କହିଲେ ମୋ ଧନ ଦୁତିବାହନ ॥ ଆନନ୍ଦ ହୋଇଣ ଏବେ ଯାଅ ଯା । ତୋ ମାତା ସଂସାରେ ପାଇବ ପୂଜା ॥ ସାଧବ ସ୍ୱଜନ ହୋଇବ ନାଶ । ସକଳ ପୂଜିବେ ପାଦେ ତୋହର ॥ ବାଞ୍ଛି ମନ୍ତ୍ରିତ ଯେଉଁ ନାଶ ହେବେ । ତୋତେ ସେବା କରି ବର ପାଇବେ ॥ ଜଗତେ ବିସ୍ତାର ହୋଇବ କୀର୍ତ୍ତି । ତୋ ମାତା ହୋଇବ ପରମ ସତୀ ॥ ଏବେ ତୁ ଯାଅ ଯା ମୋହର ସୁତ । ଏ ପୁଣ୍ୟ ଓଷା ଜଗତେ ବିଖ୍ୟାତ ॥ ଜଗତ ଜନ ଜାଣିବେ ଯେମନ୍ତେ ॥ ଆମ୍ଭେ ଅଲଙ୍କାର ଦେବା ତେମନ୍ତେ ॥ ଆଶ୍ୱିନ ମାସ କୃଷ୍ଣ ଅଷ୍ଟମୀରେ । ଦୁତିଆ ଓଷାକୁ କରିବେ ନରେ ॥ ତାହା ଶୁଣି ସୁତ ମର୍ତ୍ତ୍ୟେ ପ୍ରବେଶ । ଗୀତେ ଭଣିଲେ ପୁରୁଷୋତ୍ତମ ଦାସ ।

—o—

## ଅଷ୍ଟମ ଛାନ୍ଦ

ଏଥୁ ଅନନ୍ତରେ ଶୁଣ ହେ ନର । ମାତାଙ୍କ ଆଗେ ଭେଟିଲେ କୁମର । ଦେବ ଅଳଙ୍କାର ଭୂଷଣ ଦେଖି । ଜନନୀ ମନରେ ବହୁତ ସୁଖୀ ॥ ଯେତେ ବଚନ ପିତା ଥିଲେ ଭାଷି । ଜନନୀଙ୍କ ଆଗେ କହିଲେ ଆସି ॥ କହୁଁ କହୁଁ ଧନ ଦୁଇ ପ୍ରହର । ମଥା ଉପରେ ଦେଲେ ଧନକର ॥ ଶତମେଢ଼ୀ ପଟ ସୁବର୍ଣ୍ଣ ବାହୁ । ପଦକ ନୂପୁର ମେଖଳା ତହୁଁ ॥ ବସିଣ ତାଡ଼ ଯେ ଝୁମସର । ନାନା ଅଳଙ୍କାର ବସନେ ଭର ॥ ସବୁ ନର ନାରୀ ଅଛନ୍ତି ଚାହିଁ । କୁହୁଣୀ ଉପରେ ଦେଲେ ପକାଇ ॥ ସୂର୍ଯ୍ୟମଣ୍ଡଳ ବୋଲି ରାଜ୍ୟ ଯେତେ । ସବୁରି ଆନନ୍ଦ ପ୍ରସନ୍ନ ଚିତ୍ତେ ॥ ଧର୍ମଙ୍କ ପତ୍ନୀ ସେ ଧର୍ମ କୁମର । ଦର୍ଶନ ପାଇଁକି ଧାଇଁଲେ ନର ॥ ବାଳକ ବୃଦ୍ଧ ସହିତେ ଧାଆନ୍ତି । ମାନ୍ୟ ଜନ କଥା କେ ନମାନନ୍ତି ॥ ଧର୍ମ କହିଥିଲେ ଯେତେ ଚରିତ । ଦୁଦ୍ଧଅ ଓଷା ଯେ ଉତ୍ତମ ବ୍ରତ ॥ ଯେତେ ଅଳଙ୍କାର ସେ ଦେଇ ଥିଲେ । ମାତା ଅଙ୍ଗରେ ତା ଭୂଷଣ କଲେ ॥ ଦେବଗୁରୁ ଆଦି ସକଳ ଜନ । ଦୁଦ୍ଧଆ ଓଷାକୁ କଲେକ ବନ୍ଦନ ॥ ଯେ କାମ୍ନା କରି ଯାହା ମନାସଇ । ତାକୁ ସେ ଫଳ ଅବଧି ମିଳଇ ॥ ଯେ ବା କାମ୍ନା କରି ଏ ଓଷା କଲେ । ଧନବନ୍ତ ପୁତ୍ରବନ୍ତ ହୋଇଲେ ॥ ସେହି ଦିନରୁ ସେ ହେଲା ବିଖ୍ୟାତ । ଦୁଦ୍ଧବାହନ ଏ ଓଷା ମହତ ॥ ଅଷ୍ଟମ ଛାନ୍ଦ କଥା ହେଲା ଶେଷ ଗୀତେ କହିଲେ ପୁରୁଷୋତ୍ତମ ଦାସ ॥

— o —

## ନବମ ଛାନ୍ଦ

ଏଥୁ ଅନ୍ତରେ ଶୁଣ ଏବେ ଆନ । ଦୁଦ୍ଧଆ ଓଷାର ମହିମା ମାନ ॥ ଜଳ ଶିଆଳ ଗଛପରେ ଥିଲେ । ଦୁଦ୍ଧଆ ଓଷା ପୂଜିବାରେ ବେଳେ ॥ କ ଓଷା କରନ୍ତି ସବୁ ତରୁଣୀ । ଦୁହେଁ କୁହାକୁହି

ହୋଇଲେ ପୁଣି ॥ କାହାର ବ୍ରତ ଏ କାହାର ପୂଜା । ଅତି କାଷ୍ଟା ଏହୁ ବ୍ରତଙ୍କ ଗଜା । ଏମନ୍ତ କାଷ୍ଟା ଆନରେ ନ ଦେଖି । ଦୁଇ ଭଉଣୀ ଯେ କଣ୍ଡବା ଦେଖି ॥ ଏମନ୍ତ କରି ସେ ବିଗୁର କଲେ । ଓଷାଇଚିଏ ଯାହା ପୂଜିଥିଲେ ॥ ତାହାଙ୍କ ଛଡ଼ା ଛଡ଼ି ଗୁେପା ଯେତେ । ଛଡ଼ା ମଲକୁଟି ସ୍ନାନ ନିମନ୍ତେ ॥ ସେମାନେ ଯେବନ ବ୍ରତ ଆଚରିଲେ । ଡାଳ ଉପରେ ବସି କଥା ଶୁଣିଲେ ॥ ପୂଜି ସାରି ଗଲେ ଯେ ଯାହା ପୁର । ଏ ଦୁହେଁ ରହିଲେ ବୃକ୍ଷ ଉପର । ଏଥି ଉତ୍ତାରୁ ଯେ ଯେମନ୍ତେ କଲେ । ଚିଲ ଶିଆଳ କଥା ଶୁଣ ଭଲେ ॥ ଚିଲଟି ରହିଲା ଗଛ ଉପରେ । ଶିଆଳ ପଶିଲା ହୋଟ ଭିତରେ ॥ ଚିଲଟି ମହାକାଷ୍ଟା ବୁଦ୍ଧି କଲା । ଶିଆଳ ଗୋଟି ହୋଟରେ ପଶିଲା ॥ ଦଇବେ ରଜନୀ ହେଲା ଅପାର । ଗ୍ରାମ ବାହାରେ ମହା ସେଠି ଘର । ସଞ୍ଜାଳ ଓଷା ପୂଜିବାର ବେଳେ । ସେ ଯେ ନନ୍ଦାକଲା ବିହୁଲେ ॥ ବୋଇଲା ଭାତ ଖାଇ ମତ ହୋଇ । ମିଛ ମାତନ୍ତି ହୁଳହୁଳ ଦେଇ । ଏମନ୍ତ କରି ଯହୁଁ ନିନ୍ଦା କଲା । ଅଧଭୂତେ ତାର ପୁତ୍ରଙ୍କି ମଲା ॥ ତାହାକୁ ରାତିରେ ଯେ ଶ୍ମଶାନରେ । ପକାଇ କରି ଆଇଲେ ସଭିରେ ॥ ଶ୍ବାନ ଶୃଗାଳ ଥୋକାଏ ଖାଇଲେ । ଅସ୍ଥି ମାଂସ ହୋଇ ଥୋକାଏ ଥିଲେ । ଶିଆଳ ଖଣ୍ଡିଏ ଲୁଚ୍ଛଇ ଆଣି । କୋରଡ଼ ଭିତରେ ରଖିଲା ପୁଣି ॥ ଶିଆଳ ମନରେ ହୋଇ ବିମୁଖ । କାଷ୍ଟାରେ ସହି ନ ପାରିଲା ଭୋକ ॥ ଚିଲ ସଙ୍ଗତରେ ଡାଳେ ନ ବସି । କୋରଡ଼ ଭିତରେ ପଶିଲା ଆସି ॥ କୋରଡ଼ ଭିତରେ ରଖିଛୁ ଯାହା । ମୁଡ଼ୁ ମୁଡ଼ୁ କରି ଖାଏ ତାହା ॥ ଚିଲ ଡାକ ଦେଲା ଆଲୋ ଭଉଣୀ । ମୁଡ଼ୁ ମୁଡ଼ୁ କରି କ ଖାଉ ପୁଣି ॥ ଶିଆଳ ବୋଇଲା ନାହିଁ ତ କଛୁ । କଅଣ ଖାଇବ ଓଷା କରିଛୁ ॥ କାଷ୍ଟାରେ ଯାହା ମୁଁ ସ୍ନାନ କଲିଟି । ଶୀତେ ମୁଡ଼ୁ ମୁଡ଼ୁ ବାଜୁଛୁ ପାଟି ॥ ତେଣୁ ମୁଁ

ଡ଼ାଳେ ବସି ନ ପାରଇ । ଶୀତ କଳକୁ କୋରଡ଼େ ପଶଇ । କୋରଡ଼େ ପଶି ମାଉଁସ ଖାଇଲା । ଚିଲଟି ଡାଳେ କାନ୍ଦୁଥିଲା ॥ ଏମନ୍ତେ ଦିହିଁ ପାଳିଲେକ ଗଛ । ଥୋକାଏ ଦିନ ତହିଁ ଥିଲେ ବଞ୍ଚି ॥ ଚିଲ ଶିଆଳ ପାଇଲେ କଷଣ । ଥୋକାଏ ଦିନେ ଲଭିଲେ ମରଣ ॥ ନବମ ଛାନ୍ଦ କଥା ହେଲା ଶେଷ । ସ୍ତବେ ଭଣିଲେ ପୁରୁଷୋତ୍ତମ ଦାସ ॥

॥୧୦॥

## ଦଶମ ଛାନ୍ଦ

ଏଥୁ ଅନନ୍ତରେ ଶୁଣ ସୁଜନ । ଚିଲ ଶିଆଳଙ୍କ ଚରିତ ମାନ । ଦୁତିବାହନ କାନ୍ଦୁ ଓଷା ଫଳେ । ଦୁହେଁ ଜନମିଲେ ଉତ୍ତମ କୁଳେ ॥ ସୁନ୍ଦରୀ ସୁକୁମାରୀ ସୁଲକ୍ଷଣୀ । ଜନମ ହୋଇଲେ ଦୁଇ ଭଉଣୀ ॥ ଶିଆଳ ହୋଇ ଜ୍ୟେଷ୍ଠ ଆସି ହେଲା ॥ ଶାଳାବତୀ ତାର ନାମ ହୋଇଲା ॥ ଚିଲ ଯେ ହୋଇଲା ସାନ ଭଉଣୀ । କୁଳବତୀ ହେଲ ନାମ ତା ପୁଣି । ସୁକୁମାରି ହୋଇ ପିତାର ଘରେ । ଆନନ୍ଦ ହୋଇ ଯେ ବଢ଼ିଲେ ଭଲେ । ଏମନ୍ତ ଥୋକାଏ ଦିନ ଅନ୍ତରେ । ସାଧବ ମନ୍ତ୍ରୀ ଦୁହେଁ ହେଲେ ବର ॥ ଶାଳାବତୀ ଅଟେ ବଡ଼ ଭଉଣୀ । ମନ୍ତ୍ରୀ ବିଭା ହେଲେ ତାହାକୁ ପୁଣି ॥ ଚିଲ ଯେ କୁଳବତୀ ହୋଇଥିଲା । ସାଧବ ନାରୀ ସାଧବାଣୀ ହେଲା ॥ ପୂର୍ବ କୃତ ଓଷା ପୁଣ୍ୟର ବଳେ । ଭୋଗ ଭୁଞ୍ଜିଲେ କରମ ଶୁଫଳେ ॥ ଶିଆଳ ଯେ ବ୍ରତଖଣ୍ଡନ କଲା । ମଣ୍ଡିତ ହୋଇ ସଂସାରେ ରହିଲା ॥ ଚିଲ କାନ୍ଦୁରେ ବ୍ରତ ଆଚରିଲା । ଅନେକ ପୁତ୍ର ତହିଁ ଜାତ କଲା ॥ ଏତେ ମହିମାରେ ଦୁତିଆ ଓଷା । କଲା ଲୋକଙ୍କର ସୁଫଳ ଦଶା । ସେ ଧର୍ମ ନିରଞ୍ଜନ ପସୂର । ସୁର ଅସୁର ହେବେ ନିରନ୍ତର । ତେଣୁ ସେ ଧର୍ମ ଶ୍ରୀଚରଣେ ଆଶ । ଭ୍ରମାବେ କହେ ପୁରୁଷୋତ୍ତମ ଦାସ ॥

# ଏକାଦଶ ଛାନ୍ଦ

ଏଥି ଅନ୍ତରେ ଯେ ଏ ଦିବ୍ୟବାଣୀ । ଏମନ୍ତେ କଲେ ସେ ଦୁଇ ଭଉଣୀ ॥ ମନ୍ତ୍ରୀ ଭୃତ୍ୟପାର ଯେତେକ ହେଲେ । ଜନମ ହୋଇ ସବୁ ତାର ମଲେ । ନାନା ବିଧିରେ ନ ବଞ୍ଚିଲେ କେହୁ । ଶାଳାବନ୍ତ ହେଲ ମହା ମଉଡ଼ୁ । ଚଳନ୍ତି ଚର୍ଚ୍ଚି ମହାକଷ୍ଟ କଲ । ଧନବନ୍ତ ପୁତ୍ରବନ୍ତ ହୋଇଲ । ଜନମ ହେଲେ ଏକୋଇଶ ପୁତ୍ରେ । ମହାସୁନ୍ଦର ସେ ଅଟନ୍ତି ସୁତେ ॥ ତେଣେ ରହିଥାଇ ପୂର୍ବର ଜ୍ଞାନ । ଆସ୍ଥା କରିଥାଇ ଦୁତିବାହନ ॥ ପୁତ୍ର ଗୃହସ୍ଥ ପରିଜନ ସମେ । ଜଗେରୀ ଆନନ୍ଦ ହୋଇ ସକଳେ ॥ ଅନେକ ଯୋଇଲ ଅନେକ ଧନ । କୁଳବନ୍ଧୁ ସୁଖେ କଟାଏ ଦିନ ॥ ଶାକାବନ୍ତ ହେଲା ମନ୍ତ୍ରୀ କାମିନୀ । ଏତେ ଅଭାଗୀ ପୂର୍ବ କର୍ମ ଦୋଷ ॥ ଅନେକ କୁମର ଜାତ ହୁଅନ୍ତି । ମଉଡ଼ୁ ହୋଷେ ସମସ୍ତେ ମରନ୍ତି ॥ ନିରତେ ନୟନୁ ଲୁହ ଗଡ଼ଇ । କେଶ ବସନ କିଛି ନ ରୁଚଇ ସାନ ଭଉଣୀ ପୁତ୍ରମାନେ ଦେଖି । ମନେ ହେଉଥାଇ ସେ ମହାସୁଖୀ ॥ ମୋହ ସାନ ହୋଇ ଏମନ୍ତ ହେଲା । ଅପୂର୍ବ ପୁତ୍ରମାନ ଜାତ କଲ ॥ ଏ ମୋ ସଙ୍ଗେ ମଉଡ଼ୁ ନୋହିଲ । ବହୁ ସୁଖେ ଘରଦୁଆର କଲ ॥ ଏତିକ ସହଇ ଦେହ ମୋହର । ସାନ ଭଉଣୀର ଏତେ କୁମର । ଏମନ୍ତ ବିଚାରି ମନ୍ତ୍ରୀର ନାରୀ । ପୁତ୍ରଙ୍କୁ ଦେଖି ହୁଏ ବିଦାରି ॥ ପୂର୍ବରେ ଯାହାର ଅର୍ଜିତ ନାହିଁ । ଏ ଜନ୍ମେ ଲୋଡ଼ିଲେ ପାଇବ କାହିଁ ॥ ଛଳ ଛନ୍ଦ ଯେ ସାଧବାଣୀ ଠାରେ । କିଛି ନ ଥାଏ ଯେ ଆପଣା ଘରେ ॥ ପୁତ୍ରମାନଙ୍କୁ କହଇ ମଧୁର । ନିତି ଯାଉଥିବ ମାଉସୀ ଘର ॥ ଜେଷ୍ଠ ମାଉସୀ ମାତାଠାରୁ ବଳେ । ତୁମ୍ଭଙ୍କୁ ଧରୁଥିବ ସେହୁ କୋଳେ ॥ ଦେଖିଲେ ଆନମାନ ହେଉଥିବ । ମନ ଦୁଃଖ ତାର ପାସୋରି ଯିବ ॥ ଏହା ବିଚାରି ସୁତଙ୍କୁ ପେଶଇ ।

ମନ୍ତ୍ରୀ ଘରପା ତାହା ନ ଜାଣଇ ॥ ବୋଲଇ ଦେଖଣା ଗୃହାଣୀ ପାଇ । ପୁଅଙ୍କୁ ଦେଉଥାଉ ପଠିଆଇ ॥ ଏମନ୍ତ ସତ୍ତ୍ୱ ଜାଣି ମୋର ଚେତ । ଯୋଡ଼ି ପାଞ୍ଚଜନା ଏହାଙ୍କ ହେତ ॥ ଏମନ୍ତ ବିଗ୍ରହ କର ନରଚେ । ପୁତ୍ରଗମାନ ମାରବ କେମନ୍ତେ ॥ ମୋହ ସଙ୍ଗତରେ ମାଡ଼ି ମଡ଼ିଛୁ ହେଉ । ଦେଖିଣା ଗୃହାଣା ମୋହର ନୋହୁ ॥ କପଟ କର ତା ପୁଅକୁ ମାର । ଦେଖାଇବ ନେଇ ପାଶେ ତାହାର ॥ ଏତେ ପାଞ୍ଚଳର ସେହୁ ଗଢ଼ିଣୀ । ଦାସୀକ ବୋଲଇ ବିଶ୍ୱାସ ବାଣୀ ॥ ଆଲୋ ଦାସୀମାନେ ଏମନ୍ତ କର । ଭଉଣୀ ପୁଅ ଅସହଣି ମୋର ॥ ତାହାଙ୍କୁ ମାରବା ବିଶ୍ୱାସ କର । କେହୁ ନ ଜାଣିବେ କପଟେ ଧର ॥ ପାଆନ୍ତାଣୀ ଯାହା ଆଜ୍ଞା ସେ କଲେ । ଭୁଙ୍ଗି ପାରନ୍ତ କ ପୋଇଲ୍ଲ ଭଲେ । ବୋଇଲେ ତୁମ୍ଭ ଆଜ୍ଞା ପରମ ଣ । କରବୁ ଆମ୍ଭେ ତାହ ଙ୍କ ମରଣ ॥ ଦାସୀଙ୍କ ବାଣୀ ଶୁଣି ମନ୍ତ୍ରୀ ନାରୀ । ମାରବା ପାଇଁ ହୋଇଲ୍ଲ ବଆଣ ॥ ହସି ପୁରୁଷୋତ୍ତମ ଭାବଇ ମନ । ମାଇଲେ ରଖିବେ ଦୁତିବାହନ ।୩୪।

—o—

## ଦ୍ୱାଦଶ ଛାନ୍ଦ

ଏଥି ଉତ୍ତାରେ ସେ ପୁତ୍ରଗମାନେ । ମାଉସୀ ପାଶେ ମିଳଲେ ବହନେ ॥ ତାହାଙ୍କୁ ଦେଖିକର ମନେ ଭଲ । ଗୁପତ କର ତହୁଁ ଦେଲ ଗୃଳ । ବୋଲଇ ବାବୁରେ ଏଣିକ ଆସ । ଭୁଞ୍ଜିବ କୁ ଦେବ ଦ୍ରବ୍ୟ ପନସ ॥ ବାଳକ ସିନା ତ ହତ ମଣିଲେ । ଯେଣିକ ଡ଼ାକଲ୍ଲ ତେଣିକ ଗଲେ ॥ ସବୁଙ୍କୁ ମାର କଲ୍ଲ ଖଣ୍ଡ ଖଣ୍ଡ । ସ୍ୱରୂପ ଲୁହଇ ମାୟାର ପିଣ୍ଡ ॥ ତାହାକୁ ନେଇ ହାଣିବାର ବେଳେ । ଦୁଷ୍ଟବାହନ ଜାଣି ଯୋଗବଳେ ॥ ମାୟାରେ ନେଲେ ଅନ୍ତର୍ଦ୍ଧାନ କର । ମାୟା କୁମରକୁ ମାଉସୀ ମାର ॥ ଦାସୀଙ୍କି ବୋଇଲ୍ଲ

ସବୁରି ମୁଣ୍ଡ । ଗୁଣ୍ଡୁ ଗୋଟିକେ କରିଲେ ରୁଣ୍ଡ । ଏତେକେ
ତାରି ସବୁ ପୁଅ ମଲେ । ମୋହପଗ୍ର ହୋଇ ମଡ଼ୁଛନ୍ତି ହେଲେ ! ଗୁଣ୍ଡୁ
ଗୋଟିକେ ପୂରାଇ ନିଅ । ମାତାଙ୍କୁ ପାଇଁ ମୁଣ୍ଡମାନ ଦିଅ ।
ଦାସୀମାନେ ଶୁଣି ଏମନ୍ତ କଲେ । ଗୁଣ୍ଡୁରେ ମୁଣ୍ଡ ଭରାଇ
ନେଲେ । ଉପରେ ଝୀନବସନ ଘୋଡ଼ାଇ । ସାଧବାଣୀ ଦ୍ୱାରେ
ମିଳିଲେ ଯାଇ ॥ ଜଗ ଦୋଳପରେ ବସିଛନ୍ତି ସୁଖେ । ଧାତ୍ରୀ ପରିବାର
ଅଛନ୍ତି ପାଖେ ॥ ଏ ସମୟେ ମୁଣ୍ଡ ଗୁଣ୍ଡୁ ଧରି । ସାଧବାଣୀ
ପାଶେ ନେଇଣ କରି । ପୋଇଲି ବୋଲେ ଶୁଣ ସାଧବାଣୀ ।
ନେଇ ରଖ ଯାହା ଅଛି ମୁଁ ଆଣି ॥ ତୁମ୍ଭ ଭଉଣୀ ଶାଳାବଣି
ଭଲେ । ପୁତ୍ରୁସଙ୍କ ପାଇଁ ଯୋଗାଡ଼ ଦେଲେ ॥ ଆପଣ ଆଗ
ନୟନରେ ଦେଖ । ପୁଅଙ୍କ ପାଇଁକି ସାଇତି ରଖ । ସାଧବାଣୀ
ବୋଲେ ଭଉଣୀ ମୋର । ଭଲ ଅଛନ୍ତି ତ କହ ନକର ॥ ମୁଁ ପୁଣ
ତାଙ୍କ କେଉଁ ଗୁଣେ ସରି । ସେଇ ଅଛନ୍ତି ଏତେ ସାମଗିର ॥
ଦେଖଇ ସିନା ଥୋଇଯାଅ ଘରେ । ବଡ଼ ଘର ଖଣ୍ଡ ପଟା
ଉପରେ । ସାଧବାଣୀ ଠାରୁ ବଚନ ଶୁଣି । ଖଣ୍ଡ ପଟା ପରେ
ଥୋଇଲା ଆଣି ॥ ନନ୍ଦୀର ଘରେ ହୋଇଲା ପ୍ରବେଶ । ଏଥି ଉତ୍ତାରୁ
ଶୁଣ ଆନ ରସ ॥ ସାଧବାଣୀ ପୋଏ ଯେତେକ ଥିଲେ । ଗୋଟିଏ
ଗୋଟିଏ ଘରେ ଅଇଲେ ॥ ଦୁତିବାହନ ରଖିବେ ଯାହାକୁ ।
ମାଉସୀ ମାରେ କି କାହିଁ ତାହାଙ୍କୁ ॥ କୋଳେ କେ କାଖେ କେ
ବସିଲେ ଯାଇଁ । ମାତାଙ୍କୁ ମାଗିଲେ ଖାଇବା ପାଇଁ ! ମାତା
ବୋଇଲେ ରେ ଶୁଣ କୁମର । କି ଦେଇ ଅଛନ୍ତି ମାଉସୀ ଘର ॥
ଦୁତିବାହନଙ୍କୁ ନାଗି କରଅ । ସବୁ ପଦାର୍ଥ ବାଣ୍ଟିକରି ଖାଅ ।
ଯେତେକ ମୁଣ୍ଡ ଗୁଣ୍ଡୁରେ ଥିଲା । ସେତକ ସବୁ ନଡ଼ିଆ
ହୋଇଲା ॥ ନଡ଼ିଆପାକ ଭାଙ୍ଗିଣ ଖାଇଲେ । ସ୍ୱପନ ପ୍ରାୟେ ତାହା
ପାଶୋରିଲେ ବଞ୍ଚିଲେଟି ପୋଏ ଏଡ଼େ ମରଣ । ଦୁତିଆ ଓଷ ର

ଏଡ଼େ କାରଣ ॥ ଏ ଓଷା କରିବେ ଯେତେ ତରୁଣୀ । ନଡ଼ିଆ ଛୁଇଁବେ ଏ କଥା ଶୁଣି । ଦ୍ୱାଦଶ ଛାନ୍ଦ କଥା ହେଲା ଶେଷ । ଭାବେ ଭଣିଲେ ପୁରୁଷୋତ୍ତମ ଦାସ । ୩୨ ।

୧୦ଃ

## ତ୍ରୟୋଦଶ ଛାନ୍ଦ

ଏଥି ଉତ୍ତାରୁ ମନ ଦେଇ ଶୁଣ । ଦୁତିବାହନ ଚରିତ ପୁଣ ॥ ପୁଣି ଯାତ୍ରା କଲେ ଦୁଇ ଭଉଣୀ । ବଡ଼ ଉତ୍ସବ ହୁଏ ସାଧବାଣୀ ॥ ବୋଇଲେ ମୋ ପୁଏ ମାଉସୀ ମାନେ । ଏବେ ଜାଣିଲି ଥାନ୍ତି ଅନୁକ୍ଷଣେ ॥ ପୁଅଙ୍କୁ ବୋଇଲା ନଡିଆ ଖାଇ । ବଡ଼ ମାଉସୀକି ଜୁହାର ଯାଇଁ ॥ ତାଙ୍କ କଲ୍ୟାଣକୁ ତୁମ୍ଭେ ଭାଜନ । ଜଗି ରଖିଥିବେ ଦୁତିବାହନ ॥ କାର୍ତ୍ତିକ ଧାଇଁ ଆସୁଥାଅ ପୁରେ । ଖେଳୁଥିବ ସେହି ମାଉସୀ ଘରେ ॥ ନଗେରୀ ହୋଇଣ ସବୁ କୁମର । ହାତେ ସୁନା ଖଡ଼ୁ ପାଦେ ନୂପୁର ॥ ତଉକ ନୋଳ ହୀରମଲ୍ଲୀମାନ । ଉହ୍ଲେଉହ୍ଲେ ଜମ ପୁଅଙ୍କ କାନ । ପ୍ରବାଳ କଣ୍ଠି ରତ୍ନ ମାଳମାନ । ଯେଉଁ ପୁଅଙ୍କୁ ଯେମନ୍ତେ ଶୋଭନ ॥ କାମୁଣ୍ଡେ ବେଣୀ କାମୁଣ୍ଡେ ଜଡ଼ା । କେଉଁ ପୁଅ ଗୋଟି ବାଳ ଝାମ୍ପୁଡ଼ା ॥ ପାଟ ପୀତାମ୍ବର ପଟମାକାନ୍ଥ । ପିନ୍ଧିଛନ୍ତି ଜଙ୍ଘେ ଥୋକାଏ ବସ୍ତ୍ର ॥ ତେଲ ହଳଦୀ କେବା ଜରଜର । କେବଣ ପୁଅଟି ଧୂଳି ଧୂସର । କେ ଅବା ଗୁଳି ନ ଜାଣଇ ତାଣ୍ଡ୍ର । କେଉଁ ପୁଅଗୋଟି ଡରେଇଟି ଭୁଣ୍ଡ୍ର ॥ ଭାତ ବଟର କେ ଦୁଧ ବଟର । ଧାଇଁଲେ ସମସ୍ତେ ମାଉସୀ ଘର । ବହୁରୁଛି ମନେ ସେ ଶାଳାବଣି । ଆଣ୍ଠୁ କୁଡ ହେଲ ମୂଢ଼ମତି ॥ ସାଧବାଣୀ ଯୋଏ ଏ କାଳେ ଗଲେ । ମାଉସୀ କି ଯାଇ ପ୍ରଣାମ କଲେ ॥ ଚକିତ ହୋଇ କରଇ କଲ୍ୟାଣ । ବହୁଶ ବୋଇଲା ପାଅ ମରଣ ॥ ଆସ ମୋ ବାବୁ ଭଲ ହୋଇ ଥାଅ । ଜହ୍ନି ଫୁଲ ପରି ଆୟୁଷ ପାଅ ॥ ସେ

ଯେହ୍ନେ ସଞ୍ଜେ ଫୁଟି ପ୍ରକାଶଇ । ସୂର୍ଯ୍ୟ ଉଦୟକୁ ବିନାଶ ଯାଇ ॥
ଏମନ୍ତ ବୋଲି ସେ କଲ୍ୟାଣ କଲା । ମୁଣ୍ଡିତ କାଟିଲ କାହୁଁ ଅଛିଲା ।
ସେ ଥିର ବର୍ତ୍ତି କେମନ୍ତ ଖାଇଁଲେ । ଏଥିରକ ଦାଣ ଜଣାଇ
ଭଲେ ॥ କପଟେ ବୋଇଲା ଆସରେ ବାବୁ ॥ ତୁମ୍ଭ ଖାଇବାକୁ
ରଖିଛୁ ସବୁ ॥ ଯେଉଁ ଠାବରେ ନ ଜାଣିବେ କେହି । ତାଙ୍କର
ପୁଅଙ୍କୁ ନେଲା ଭଣ୍ଡାଇ ॥ ସମସ୍ତ ମାରି ଲୁଚିଫାଳ କରି । ହାତ
କାଟିଲା ଆଖି ନିଜା ପରି ॥ ପାଞ୍ଚୁଲି ଆଙ୍ଗୁଳି କାଟିଲା ଭିନ୍ନେ । ଅଧା
ଫଡ଼ା ମାନ ଦିଶେ ଯେସନେ ॥ ପୁଅଙ୍କୁ କପଟେ ମାରିବା ବେଳେ ।
ଦୁତିବାହନ ଜାଣି ଯୋଗବଳେ । ମାୟା ବାଳକ ତାକୁ ଆଣି
ଦେଲେ । ସାଧବ ପୁଅଙ୍କୁ ଶୂନ୍ୟରେ ନେଲେ ॥ ଲୁଙ୍ଗୁଡ଼ା ଗୋଟିକେ
ତାହା ପୁରଇ । ଦାସୀକି ବୋଇଲା ଦଣ୍ଡ ନେଇ ॥ ଦେଖିବଟି
ସେହି ପୁଅଙ୍କ ହାତ । ବାହୁନାଇ କାନ୍ଦ ହୋଇ ଅନାଥ ॥ ତକ୍ଷଣେ
ଦାସୀ ଲୁଙ୍ଗୁଡ଼ାରେ ଘେନ । ସାଧବାଣୀ ପୁରେ ହେଲେ କାମିନୀ ॥
ସେ ଖଟଦୋଳି ବାଙ୍କିଆ ଉପରେ । ସାଧବାଣୀ ବସିଅଛି ନିର୍ଭରେ ॥
ଦାସୀ ପରିବାରି ଅଛନ୍ତି ବେଢି । ସମସ୍ତଙ୍କୁ ଲେଖି ଦେଉଛି ମଢ଼ି
ଏମନ୍ତ ସମୟେ ଲୁଙ୍ଗୁଡ଼ି ଧରି ପୋଇଲି ଯାଇ ହୋଇଲା ଉଭା ।
ବୋଇଲା ଆଗେ ଆସ ସାଧବାଣୀ । ଦ୍ରବ୍ୟ ଦେଇଛନ୍ତି ତୁମ୍ଭ
ଭଉଣୀ ॥ ତୁମ୍ଭଠାରେ ତାଙ୍କ ବହୁତ ସୁଖ । ଦେଖି କରି ଏହା
ସାଇତି ରଖ । ସାଧବାଣୀ ବୋଲେ ମୋ ବୋଲ କର ।
ସ୍ୱାଙ୍ଗ ଯାଉ ଆମ୍ଭ ଘର ଗହଳ ॥ କେତେବେଳେ ଯାଏ ଥିବଟି
ରଖି । ବଡ଼ ଘରେ ଗୋ ଦେଇଯାଅ ଥୋଇ ॥ ସାଧବାଣୀ ବୋଲେ
ଲୁଙ୍ଗୁଡ଼ି ଗୋଟି । ଥୋଇଣ ପୋଇଲି ଗଲା ଲେଉଟି ॥ ସାଧବାଣୀ
ପୋଏ କେତେ ବେଳରେ । ଗୋଟି ଗୋଟି ହୋଇ ମିଳିଲେ ଘରେ ॥
ଖାଇବା ପାଇଁ କି ମାଗିଲେ ଯାଇଁ । ସାଧବାଣୀ ବୋଲେ
ପୁଅଙ୍କୁ ଚାହିଁ ॥ କି ଦେଇ ଅଛନ୍ତି ମାଉସୀ ଘର । ଦେଖ କରି

ଖାଅସବୁ କୁମର ॥ ଦୁତିବାହନକୁ ଲଗି କରଅ । ସବୁ ଭାଇପାଳ ବାର୍ଣ୍ଣ ଖାଅ ॥ ଶୁଣି ପୁଅମାନେ ଧାଇଁଲେ ଖରେ । ଗୁଙ୍ଗୁଡ଼ି କାଢ଼ିଣ ଦେଖିଲେ ଚଳେ ॥ ହାତ ଖଣ୍ଡ ଖଣ୍ଡ କାଟିଛୁ ଯାହା । ଆଖୁ ଖଣ୍ଡ ଖଣ୍ଡ ହୋଇଛି ତାହା ॥ ଆଙ୍ଗୁଳ ପଙ୍ଗୁଳ କାଟିଛୁ ଯେତେ । ଅଦାଫଡ଼ା ମାନ ହୋଇଛୁ ତେତେ ॥ ଆଖ ଗଣ୍ଡିଗ ଅଦା ଫଡ଼ାମାନ । ଆନନ୍ଦେ ଖାଇଲେ ସବୁ ନନ୍ଦନ ॥ ଦୁତିଆ ଓଷାର ମହିମା ଏତେ । ଓଷାଇତମାନେ ଶୁଣ ସୁଚିତେ ॥ ଓଷାଇତ ମାନେ ଏକଥା ଶୁଣି । ଆଖ ଅଦାରେ ହାତ ବଅ ଶୁଣି ॥ ତ୍ରୟୋଦଶ ଛାନ୍ଦ ହୋଇଲା ଶେଷ । ଗୀତେ ଭଣିଲେ ପୁରୁଷୋତ୍ତମ ଦାସ ।୪୯ ।

—o—

## ଚତୁର୍ଦ୍ଦଶ ଛାନ୍ଦ

ଏଥୁଅନନ୍ତରେ ଶୁଣ ଏକମନ । ଦୁତିବାହନଙ୍କ ମହିମା ମାନ ॥ ଯାହାକଲେ ଏହୁ ଦୁଇ ଭଉଣୀ । ଏକମନେ ଶୁଣ ସର୍ବ ତରୁଣୀ ॥ ଆଖ ଅଦାରୁ ପେଟେ ପେଟେ ଖାଇ । ମାତାଙ୍କ ପାଖରେ ବସିଲେ ଯାଇଁ ॥ ଅତି ଆନନ୍ଦ ସାଧବାଣୀମନ । ପୁଅଙ୍କ ମୁଖରେ ଦେଲା ଚୁମ୍ବନ ॥ ମାତାଙ୍କୁ ବୋଇଲେ ସବୁ କୁମର । ଭଲାଆମ୍ଭ ମାଉସୀଘର ॥ ମାତ ସେ ବୋଇଲେ ଶୁଣରେ ବାବୁ । ମାଉସୀର ଦୟା ଅଛଇ ସବୁ ॥ ଏବେ ଯାଅ ଦେଖି ମାଉସ ଘର । ବସିଥିବ ଯାଇ ସବ କୁମର । ମାତାର ବଚନେ ସବୁ କୁମରେ ଚଳିଲେ ମିଳିଲେ ମାଉସୀ ଘରେ ॥ ମାଉସୀ ବୋଲି ମଣୁଥିଲା ସୁଖ । ଦେଖି କର ମନେ ମାଇଲା ଦୁଃଖ ॥ ବୋଇଲା ନ ମରି ଜୀଇଁଲେ ଏହୁ । କେଉଁ ଦେବତା ଜଗିଥିଲା କାହୁଁ ॥ ପୁତ୍ରସବ ମାନେ ତୁଅନ୍ତୁ ଓଳଗି । କଲ୍ୟାଣ କର ବୋଲେ ମର ବେଗେ

ଦେଖିଣମନେ କଲ୍ଲ ବଡ଼ରୋଷ । ଟିକି ଟିକି କରି କଟିବ ମାଂସ ॥
ସେହି ମନ୍ତ କରି ଗୁପତ ସ୍ଥାନ ମାଗ୍ନାବାରେବଲକୁ ଦୁତିବାହନ ॥
ପୁଅମାନଙ୍କୁ କେତେ ଦେଲେ ହରି । ମାପୁ କୁମରକୁ ମାଉସୀମାରି ॥
ମନରେ କରି ବଳଆର ରୋଷ । ବୋଇଲ୍ଲ ଏଥର କାଟିବ ମାଂସ
ଥୋକାଏ କଲା ମୃଗ ପ୍ରାୟେ କରି । ଥୋକାଏ କାଟିଲ୍ଲ ଚଣାର
ସରି । ପୂରିଥୋକାଏ ବଡ଼ ଚନ୍ଦ୍ର କଲ୍ଲ । ଯେମନ୍ତ ପଦ୍ମେ ଦଶର୍ଲ
ସୋହ୍ଲା ॥ ଭୃଙ୍ଗୁଡ଼ା ଗୋଟିକେ ହବ ପୂରଇ । ପୋଇଲ୍ଲକ ବୋଲେ
ଆସଲେ ଦେଇ ॥ ଦେଖୁଛ ପୁଅଙ୍କ ମାଉଁସ କାଟି । ଏଥର
ରଖିବ କେଉଁ ଦିଅଁଟି ॥ ତାହା ଶୁଣି ଦାସୀ ଭୃଙ୍ଗୁଡ଼ା ଧରି ।
ସାଧବାଣୀ ପାଶେ ଭୂରତେ ମିଳି ॥ ମାଜଣା ହେଉଥିଲା ସାଧବାଣି
ପୋଇଲ ଭେଟିଲା ଭୃଙ୍ଗୁଡ଼ ଘେନ । ପୋଇଲ୍ଲ ବୋଲେ
ଆଗୋ ସାଧବାଣୀ । ଭୃଙ୍ଗୁଡ଼ାଦେଦେହ ଭୁମ୍ଭର ଭଉଣୀ ॥ କି କି
ଦେଇଛନ୍ତି ଦେଖିଣ ଥୁଅ । କହିଛନ୍ତି ଏହା ଖାଇବେ ପୁଅ
ସାଧବାଣୀ ବୋଲେ ଦେଖିବି ସିନା । ଥୋଇପାଅ ଟଗୋ ନ ପାଅ
ବେଦନା ॥ ଶୁଣିଣ ପୋଇଲ୍ଲି ଥୋଇବେ ଘରେ । ଘିଅ ଘର ଖଣ୍ଡି
ପଟା ଉପରେ ॥ ଥୋଇ ଦେଇକରି ଗଲା ପୋଇଲ୍ଲି । ପୁଅ ଏ
ଅଇଲେ ଦାଣ୍ଡେ ବୁଲିବାଲି ॥ ପୁଅମାନଙ୍କୁ ସାଧବାଣୀକହି ।
ମାଉସୀ ପାହାକ ଅଛନ୍ତି ଦେଇ ॥ ଦେଖିକରିଭୁମ୍ଭେ ଖାଅଚେବାବୁ
ଦୁତିବାନଙ୍କ ମହିମା ସବୁ ॥ ଶୁଣିପୁତ୍ରମାନେ ଆନନ୍ଦହୋଇ ॥
ଭାଙ୍ଗୁଡ଼ି ଆଣି ଦେଖିଲେକ ଚହିଁ ॥ ମୃଗ ପରି ହୋଇ
ଯେତେକ ମାଂସ । ସବୁ ହୋଇ ଅଛି ମୃଗ ସଦୃଶ ଚନ୍ଦ୍ର
ଥୋକାଏ ବଡ଼ଚଣା ହେଲା । କଣ ଗଣ୍ଡି ପର ହୋଇଛି
ସୋହ୍ଲା ।॥ ଏକା ମାଂସ ତିନି ରୂପ ହୋଇଲା ଦେଖିଲେ
ମୃଗ ବଡ଼ଚଣା ସୋହ୍ଲା ॥ ପୁତ୍ର ମାନେ ଚନ୍ଦ୍ର ହରଷ
ହୋଇ । କଉତୁକ କରି ଖାଇଲେ ଯାଇ ॥ ଦୁତିବାହ-
ନଙ୍କ ମହିମା ଏତେ । ଓଷାଇତିମାନେ ଶୁଣ ସୁଚିତେ

ଏକଥା ଯେତେବେଳେ ନଷ୍ଟ ହେବ । ମୁଣ ବଡଚଣା ଯୋଦ୍ଧା ଛୁଇଁବ ॥ ଯେ ଧର୍ମ ଅଟନ୍ତି ଦୁତିବାହନ । ସୁର ଅସୁର ସେ ଦେବ ବନ୍ଦନ ॥ ତେଣୁ ସେ ଧର୍ମର ଚରଣ ତଳେ ॥ ପୁରୁଷୋତ୍ତମ ଭଜଇ କଷ୍ଟରେ । ୩୬ ।

଼୦଼

## ପଞ୍ଚଦଶ ଛାନ୍ଦ

ଏଥି ଅନ୍ତରେ ଯେ ଶୁଣ କାହାଣୀ ॥ ଦୁତିବାହନଙ୍କ ଚରିତ ପୁଣି ॥ କାଟିଣ ଭଜଣି ପୁଅଙ୍କ ମାଂସ । ସେ ଘରରେ ହେଲା ଅତି ହରଷ ॥ ମନେ ବାନ୍ଧୁରଇ ଅବଧି ମଲେ । କେଉଁ ଯୋଗୁ ସିନା ମେଣ୍ଢା ଥିଲେ ॥ ଦେଖିଣ ମାଜଣି ମାନେ କାତର । ପୁଣି ତ ଜଇ ଅଇଲେ କୁମର ॥ ଏତେ ମାଇଲ ଜଉଛନ୍ତି କାହିଁ । କେଉଁ ରୂପରେ ତ ପାଉଲ ନାହିଁ ॥ ପୁଣି ଓ୍ତାକନେଲା ଗୁପତ କରି । ଖଡଗ ଧରି ଆଗ ବଧ କରି ॥ ମାରଣ ହୋଇ କୋପେ ପ୍ରଜ୍ୱଳତ । ସବୁ ପୁଅଙ୍କର ଘଙ୍ଗିଲ ଦାନ୍ତ ॥ ଅନ୍ତ କାଢ଼ିଣ ପକାଇଲ ଚିରି । ଅନ୍ତ ଦାନ୍ତକୁ ବୃଙ୍ଗୁଡ଼ରେ ଭରି ॥ ପୋଇଲ୍ଲୀକ ବୋଲେ ଦେଇ ଆସ ଯା । ସାଧବାଣୀ ମୁଣ୍ଡି ପାଇବ ଲଜ୍ଜା ॥ ଶୁଣିଣ ପୋଇଲ ଭୃଙ୍ଗୁଡ଼ ଧରି । ସାଧବାଣୀ ପ୍ରରେ ତ୍ତୁରିତେ ମିଳି ॥ ଭୁଞ୍ଜିଣ ବସିଥିଲେ ସାଧବାଣୀ । ପୋଇଲ୍ଲୀ ମିଳିଲା ଭୃଙ୍ଗୁଡ଼ ଘେନି ॥ ଡାକିଲା ଏଣିକି ଆସ ଗୋ ମାଏ । ଭଉଣୀ ଦେଇଛନ୍ତି କ କ ଇଏ ॥ ଯାହା ଦେଇ-ଛନ୍ତି ଭୃଙ୍ଗୁର ହାତେ । ଦେଖି ଧଖିଲେ ନ ଥିବ ଅପ୍ରତେ ॥ ସାଧବାଣୀ ବୋଲେ ଭୁଞ୍ଜୁଛି ମୁହିଁ । ଦେଖଇ ସିନା ଦେଇଯାଅ ଥୋଇ ॥ ସାଧବାଣୀ ବୋଲ ଶୁଣିଲା ଯହୁଁ । ଭୃଙ୍ଗୁଡ଼ ରଖି ଲେଉଟିଲା ତହୁଁ ॥ କେତେକ୍ଷଣ ପରେ ସେ ପୁଅମାନେ ମିଳିଲେ ॥ ଆସି

ମାତାସନ୍ନିଧାନେ ॥ ମାତାବୋଲନ୍ତିରେ ବାଳକେ ମୋର । ବ୍ରହ୍ମଣ ଖାଅରେ ମାଉସୀ ଘର । ଏବେ କି ଦ୍ରବ୍ୟ ଦେଇଛନ୍ତି ଆଣି । ଖାଅ ଯା ବୋଲି କହେ ସାଧବାଣୀ ॥ ପୁତ୍ର ଧାଇଁଲେ ମାତାଙ୍କ ବଚନେ । ଭୃଙ୍ଗୁଡ଼ି କାଢ଼ିଲେ ଯାଇଁ ବହନେ । ଉତ୍ତମମକା ହୋଇଅଛି ଧାନ୍ୟ କନ୍ଦମୂଳ ଯେ ହୋଇଅଛି ଅନ୍ନ ॥ ଦୁତିବାହନଙ୍କୁ ସୁମରି ମନ । ମକା କନ୍ଦମୂଳ କଲେଭୋଜନ ॥ ଦୁତିବାହନ ରଖୁଛନ୍ତି ଯାକୁ । ମାଉସୀ ମାଇ କି କରିବ ତାଙ୍କୁ ॥ ଯେଉଁ ପୁରୁଷ ଧର୍ମ ନିରଞ୍ଜନ । ସେହି ହିନାଅଛେ ଦୁତିବାହନ । ଓଷାଇତିମାନେ ଏ କଥା ଶୁଣି । ମକାକନ୍ଦମୂଳ ଛୁଇଁବ ପୁଣି ॥ ଏଣୁ ସେ ଧର୍ମ ପୁରୁଷଙ୍କୁ ଆଶ । ଶରଣ ମାଗେ ପୁରୁଷୋତ୍ତମ ଦାସ ॥

—o—

## ଷୋଡଶ ଛାନ୍ଦ

ଏଥୁ ଅନନ୍ତରେ ଯେ ଶୁଣିବା ଆନ । ଅନାଦ ହୋଏ ଶାଳବଣ ମନ ॥ କାଢ଼ି ଶିଖାଅନ୍ତି ହଙ୍ଗଳ ଧାନ୍ୟ । ଏହି ଥର ମରି ଯିବେଟି ସୁତ । ସାଧବାଣୀ ଏବେ ମୋହର ମତ । ବାହୁନି କାନ୍ଦିବ କେତେ ଯୁବତୀ ॥ ଏମନ୍ତ ବିଚାରି ମନେ ହରଷ । ଚଢ଼ି ସୁକ ଗଲା କେତେ ଦିବସ ॥ ସାଧବାଣୀର ଯେତେକ କୁମର । ସକଳେ ମିଳିଲେ ମାଉସୀ ଘର ॥ କେତେ ପରକାରେ ମାଇଲ ମୁଣ୍ଡି ଲଞ୍ଜ ପିଣ୍ଡ ନ ଗଲା କମାଇଁ ॥ କେଉଁ ପୁରୁଷ କେମନ୍ତେ ରଖଇ କେମନ୍ତେ ବଞ୍ଚାଏ ମୂତ ମାରଇ ॥ ଏବେ କି କରିବ ମରିବେ କାହିଁ । ବସ୍ତର ଗମ୍ଭୀର ଘରକୁନେଇ । ଖୋଳି ପକାଇଲା ସବୁଙ୍କ ଆଖି । କାଟି ଖଣ୍ଡେଖଣ୍ଡେ ହୋଇଲା ସୁଖୀ ॥ ପୁଣି କେତେକେତେଲେ ଦୁତିବାହନ । ଶୂନ୍ୟରେ ହରିଲେ ସେ ପୁତ୍ରମାନ ॥ ମାମୁଁକୁମାରଙ୍କୁ କଲା ଏ ନାଶ । ଦାସୀକି ବୋଲେ ନେଇ ନେଇ ଆସ ॥ ପୁଣି

ସଜାଡ଼ିଲ ଯତନ କରି । ସାଧବାଣୀ ଘରେ ଭୁରିଚେ ମେଳି ॥ ବୋଇଲ କି କରୁଅଛ ଗୋ ମାଏ । କି କି ମାନ ତୁମ ଭଳି ଗୀ ହଏ ॥ ସାଧବାଣୀବୋଇଲେ ଥୋଇଯା ଘରେ । ଦେଖନ୍ତୁ ସିନା ଅଇଲେ କୁମର ॥ ତାହାଶୁଣି ଦାସୀ ଥୋଇଲ ଘରେ । କାହ୍ନୁଡ ପୋଈଲ୍ଲା ଘଲ ସତ୍ତରେ । ଥୋକାଏ ବେଲେ ସାଧବାଣୀ ପୋଏ ମିଳିଲେ ଆସି ଗୋଟିଏ ଗୋଟିଏ ॥ ସାଧବାଣୀ ବୋଇଲେ ଶୁଣ ମୋ ବାବୁ । ମାଜସୀ ଦେଇଚୁ ଖାଅଯା ସବୁ ॥ ତାହାଶୁଣି ପୋଏ ଧାଇଁଲେ ଘରେ । ଥୋଇଲ ବୃଙ୍ଗୁଡ ଆଣି ସତ୍ତରେ । ଜମଳା ଲେମ୍ବୁ ହୋଇଅଛି ଡ଼ୋଳା । ଖାଇଣ ନାରଙ୍ଗ ଧଇଲେ ବଳା ଖାଇଣ ପୋଏ ହୋଇଲେ ଆନନ୍ଦ । ମାଜସୀର କେତେ ନ ଗଲ ହନ୍ଦ । ଓଷାଇତମାନେ ଏ କଥା ଶୁଣି । ଲେମ୍ବୁନାରଙ୍ଗକୁ ଛୁଇଁବେ ପୁଣି ॥ ଷୋଡ଼ଶ ଛାନ୍ଦ ଏ ହୋଇଲ ଶେଷ । କହେ ଅଧମ ପୁରୁଷୋତ୍ତମ ଦାସ । ୧୬ ।

—o—

## ସପ୍ତଦଶ ଛାନ୍ଦ

ଏଥି ଉତ୍ତାରୁ ଏବେ ଶୁଣ ଆନ । ପୁଣିଗଲେ ସାଧବାଣୀ ନନ୍ଦନ ॥ ଦେଖିମାଜସୀର ବୁଡ଼ିଲ ଜ୍ଞାନ ॥ ବୋଇଲେ କାହିଁ ପାଇଲେ ଜୀବନ ॥ ହସ୍ତରମତେ କଲ ମହାରୋଷ । ମାଇଲା ଗୁପତେ ବାଳୁତ ଶିଷ୍ୟ ॥ ଠେକା ଠେକା କରି ଥୋକାଏ କାଠ ଅନ୍ତେ ଲାଗିଥାଏ ଯେହ୍ନେ ଲେଉଟ ॥ ବଳୁଳଫୁଲ ପଡ଼ିଏ ଥୋକାଏ । କେତେକ କେରନ୍ଦା କୋଳି ପଡ଼ିଏ ॥ ଥୋକାଏ ମଂସ ଫଡ଼ା ଫଡ଼ା କଲା । ପୋଇଲି ହାତେ ପଠିଆଇ ଦେଲା ସାଧବ ଦୁଆରେ ସେମାନେ ଯେବେ ; ଚଞ୍ଚଳ ମିଳିଲା ଯାଇ କାମିନୀ । ସାଧବାଣୀ ଘରେ ଆଉଡ ଥିବ । ପୋଇଲି ଥୋଇ କାହ୍ନୁଡଇଗଲା କେତେହେଁକ ବେଳେ ବାଳୁତଶିଷ୍ୟ । ଘରଠାରେ

ଯାଇଁ ହେଲେ ପ୍ରବେଶ । ମାତା ବୋଇଲେ ଶୁଣ ଆରେ ବାଳ । ଖାଅ ଯା ମାଉସୀ ଦ୍ରବ୍ୟ ସକଳ ॥ ତାହା ଶୁଣି ପୋଏ ଦେଖିଲେ ଯାଇ । ଦୁଷ୍ଟବାହନକୁ ସୁମର ଚର୍ହି ॥ ତେକ ତେକ ହୋଇ ଫେଟେକ ଥିଲ । ପଦ୍ମ ପୁଷ୍କର ଯେ ସେଟେକ ହେଲ ॥ କଳା ପିଠ୍ର ଯେ କାଟିଥିଲ ବାଳୀ । ଥୋକାଏ ହୋଇଛୁ କେରନ୍ଦାକୋଳ । ଥୋକାଏ ହୋଇଛୁ ନଅଛ କୋଳ । ଖାଇଣ ବାଳକେ କରନ୍ତୁ କେଳ ॥ ଫେଡ଼ା ଫେଡା କରି କାଟିଛୁ ଯେତେ । କରମଙ୍ଗା ହୋଇ ଅଛଇ ତେତେ ॥ ପଦ୍ମ ପୁଷ୍କର ଯେ କେନ୍ଦୋକୋଳ କରମଙ୍ଗାପୋଏ ଖାଇଲେ ମିଳ ॥ ଓଷାଇତମାନେ ଏହା ଶୁଣିଲେ ଏଣୁ ଦ୍ରବ୍ୟମାନ ଛୁଇଁବେ ଭୟେ । ଏମନ୍ତ ଦୁଷ୍ଟବାହନଙ୍କ ରସ । ଦୁଷ୍ଟାବେ କହେ ପୁରୁଷୋତ୍ତମ ଦାସ । ୧୮ ।

—o—

## ଅଷ୍ଟାଦଶ ଛାନ୍ଦ

ଏଥୁ ଉତ୍ତରୁ ଶୁଣ ଆନ ଗୀତ । ପୁଏ ନ ମରି ରହିଲ କଉତ ପୁଣିଗଲ ଚର୍ହି କେତେ ଦିବସ । ଷଣ୍ଢ ନୋହିଲେ ଯେ ବାଳୁତଶିଷ୍ୟ କଉତୁକ କରି ଖେଳିବାପାଇଁ । ଶାଳବଣ୍ଠ ପୁରେ ମିଳିଲେ ଯାଇଁ ॥ ଦେଖିଣ ମାଉସୀ ଜଦ କାମୁଣ୍ଡ । ଗାଇଁ ଛନ୍ତି ବୋଲି ମୋହନେରପଣ୍ଡ ॥ କ୍ରୋଧେ ପ୍ରଜ୍ଜ୍ୱଳିତ ହୋଇଣ ବାଳୀବାଳକଙ୍କୁ ଧରି ସ୍ୱହସ୍ତେ ମାରି ॥ ଗୁଳି ପକାଇଲ ଦେହରୁ ଚମ ହାଡ଼ ମାଉଁସ କଲା ଭିନ୍ନ ଭିନ୍ନ । ଅନ୍ତ ମାଉଁସ ମୁଡା ମୁଡା କଲ । ହାଡ଼ ଚର୍ମ ଭିନ୍ନ ଭିନ୍ନ ରଖିଲ । ଗୁଙ୍ଗୁଡା ଗେଣ୍ଡେ ସବୁ ପୂରାଇ । ପୋଇଲିକି ବୋଲେ ଢଅଣେ ନେଇ ॥ ତାଧେନ ନୋଇଲି ହେଲ ବାହାର । ଦେଇ ଅଇଲ ସାଧବାଣୀପୁର ॥ ଦୁଷ୍ଟବାହନଙ୍କ ମନ୍ତ୍ରମାନଙ୍କେ । ସର୍ବ

ଦୁତବାହନ ପାଇଁ ମିଳନ୍ତେ ଘରେ ॥ ଅନ ଯେ କରନ୍ତ ମାତାଙ୍କଠାରେ । ଆହାର ମାଗନ୍ତ କ୍ଷୁଧା ଆତୁରେ ॥ ମାତା ବୋଇଲା କୁମରକୁ ଚାହିଁ । ମାଉସୀ ଦେଉଛନ୍ତି ଖାଅ ଯା ଯାଇ ॥ ଶୁଣି ପୁଅମାନେ ଧାଇଁଲେ ଘରେ । ଗୁଣ୍ଡ କାଢ଼ି ଦେଖିଲେ ତଳରେ ॥ ଗୁଳ ଦେଇଥିଲା ଯେତେକ ଚମ । ସେ ପାଟ କାଛ ହୋଇଛି ଉତ୍ତମ ମାଉଁସ ଅନ୍ନ ମୁଦ ମୁଦା ଯାହା । ଜଆଟିଆ ମାନ ହୋଇଛି ତାହା॥ ଲମ୍ବ ଲମ୍ବ ମଂାସ କାଟିଛି ଯେତେ । ପାଚଲା କଦଳୀ ହୋଇଛି ତେତେ ॥ ଯେତେକ ହାଡ଼ ତହିଁ ଦେଇଥିଲା । ହାଡଯାକ ସବୁ ମୁକ୍ତାହୋଇଲା ॥ ଦୁତବାହନଙ୍କୁ ସୁମରୁଦସ୍ଯେ । ଖାଇଲେ ପିନ୍ଧଲେ ବାଳୁତ ପୁଏ ॥ ଏ କଥା ଯେତେବେଳେ ଶେଷ ହେବ ଏସ୍ତ ଦ୍ରବ୍ୟମାନ ସର୍ବେ ଛୁଇଁବ ॥ ଦୁତବାହନଙ୍କ ମହିମା ଏତେ । ବଞ୍ଚିଲେ ସୁଖେ ସାଧବାଣୀ ସୁତେ ॥ ତେଣୁ ସେ ଦୁତ ବାହନଙ୍କୁ ଆଶ । ପ୍ରସ୍ତାବେ କହେ ପୁରୁଷୋତ୍ତମ ଦାସ । ୨୨ ।

—୦—

## ଊନବିଂଶ ଛାନ୍ଦ

ଶୁଣ ଶୁଣ ଏବେ ନରେ ଏମନ୍ତ ଗୀତ । ଦନକୁ ଦନ ମୃତ୍ୟୁଠାରୁ ବର୍ତ୍ତି ॥ ଦୂତ ବାହନଙ୍କ ମହିମା ତେଣୁ । ସାଧବାଣୀ ପୋଏ ନ ମଲେ ତେଣୁ ॥ ପୁଣି କହୁଁ ଦନେ ବାଳକମତେ । ଖେଳବାକୁ ଗଲେ ସାଧବ ସୁତେ ॥ ମାଉସୀ ମନ୍ଦରେ ମିଳଲେ ଯାଇଁ । ଦେଖି ମାଉସୀ ମୋହଗଲା ଚାହିଁ । ବଞ୍ଚିଥିଲେ ମୁ ତ ମାରିଲି ଏତେ । ଜୀଇଁ ଆସୁଛନ୍ତି କେବଣ ମତେ ॥ ଏବେ କ କରିବି ନେବି ଜୀବନ । କାଟିପକାଇଲି ସବୁରି କାନ ॥ ପୁଣି ସବୁର ଗୋଡ଼ ହାତ ଆଣି । ଶିର ଶବ କରି ଚରିଲା ଜାଣି ॥ ହାତ ଗୋଡ଼ ଗଣ୍ଡି କାନ ସହିତ । ପୁଣି ଗୁଣ୍ଡାରେ ଭରି ସମସ୍ତ । ପୋଇଲାକ

ବୋଲେ ଆସନ୍ତେ ଦେଇ ! କଉଛନ୍ତି ସେହୁ କେମନ୍ତ ହୋଇ ॥ ଶୁଣି ପୋଇଲା ସେମାନ ପ୍ରବେଇ । ଧାଇଁଲେ ମନରେ ଆନନ୍ଦ ହୋଇ ॥ ସାଧବାଣୀକି ପୋଇଲା ବୋଲେ । ଭଉଣୀ ଘରୁ ଯୋଗାଡ଼ ଅଇଲା ॥ ଆସ ସାଧବାଣୀ ସାଇତ ରଖ । ତୁମ୍ଭଟାରୁ ଚାଙ୍କ ବହୁତ ସୁଖ ॥ ସାଧବାଣୀ ବୋଲେ ଦେଖିବା ପଛେ । ଖେଳ ଆସନ୍ତୁ ମୋ ବାଳୁତ ବଚ୍ଛେ ! ଥୋଇ ଦେଇ ଯାଅ ଗମ୍ଭୀର ଘର । ଆସିଲେ ପୋଏ ଖାଇବେ ମୋହର ॥ ଶୁଣି ପୋଇଲା ଥୋଇ ଲେଉଟିଲା । ମନ୍ଦୀ ମନ୍ଦରେ ଯାଇଣ ମିଳିଲା । କେତେବେଳେକ ବେଳେ ସାଧବ ପୋଏ । ଦାଣ୍ଡେ ଖେଳ ଖେଳ ମନ୍ଦରେ ହୋଏ ମାତାଙ୍କୁ ମାଗିଲେ ଖାଇବା ପାଇଁ ॥ ମାତା କହୁଦେଲେ ଖାଅ ଯା ଯାଇଁ ॥ ଭିତରୁ କାଢ଼ି ଆଣିଲେ ନନ୍ଦନ । କାନ ଯାକ ସବୁ ହୋଇଛି ପାନ ॥ ଚାଉଳ ହାତ ଗୋଡ଼ ଦେଇଛି ପହା । କହ୍ନି କଖାରୁ ହୋଇ ଅଛି ତାହା ॥ କେତେକ ମାଦଳ ଅଛଇ ପଡ଼ି । କେତେକ ହୋଇ ଅଛଇ କାକୁଡ଼ି ॥ ଦୁତି ବାହନଙ୍କ ମହିମା ଏତେ ଆନନ୍ଦେ ଖାଇଲେ ସାଧବ ସୁତେ ॥ ଏ କଥା ଯେତେ ବେଳେ ଶେଷ ହେବ । ପାନ କାକୁଡ଼ି କଖାରୁ ଛୁଇଁବ ॥ ଆବର ଖ୍ରୀ କହ୍ନିମାନ ଛୁଇଁବ । ଦୁତିବାହନଙ୍କୁ ସୁମରୁ ଥିବ ॥ ଦୁତିବାହନଙ୍କ ମହିମା ରସ । ଗୀତେ ଗାଇଲେ ପୁରୁଷୋତ୍ତମ ଦାସ ॥

—୦—

## ବିଂଶ ଛାନ୍ଦ

ଏଥି ଉତ୍ତାରୁ ଶୁଣ ଆନ ଗୀତ । ବାଳକ ବଧକଲା ଶାଳାବନ୍ତି ॥ ଦୂତିବାହନଙ୍କ ମହିମାବଳେ । କେବେ ହେଁ ନ ମଲେ ସାଧବବାଳେ ଅନେକଥର ମରଣୁବଞ୍ଚିଲେ । ନାନା ଅପମୃତ୍ୟୁମାନ ମେଣ୍ଟାଇଲେ ଅନେକ ମତେ ନ ମଲେ କୁମର । ରକ୍ଷା କରନ୍ତି ସେ ଧର୍ମର

ବାଳ ॥ ଶାଳାବନ୍ତି ବୋଲେ ଏ କଥା ଏହି । କେଉଁ ଦେବତା କେମନ୍ତ ରଖଇ ॥ ଅନେକ ସନ୍ତାପ କରଇ ମନ । ଲୋତକ ବହଇ ଦେନି ନୟନ । ଦିନକୁ ଦିନ କ୍ଷୀଣ ହେଲା ତନୁ । ପୁତ୍ରଙ୍କ କଥା ନ ଯାଏ ମନୁ ॥ ଏକ ଦିନକରେ ଦାସୀ କି ଘଇ । ବୋଇଲା ଆଲୋ ଦେଖି ଆସ ଯାଇ ॥ ମଲେ କି ନାହିଁ ସାଧବାଣୀ ସୁତେ । ଜୀଇଲେ କି ନାହିଁ ବାହନ ସୁତେ ॥ ତାହା ଶୁଣି ଦାସୀ ବେଗେ ଧାଇଁ । ସାଧବାଣୀ ପୁରେ ମିଳିଲା ଯାଇ ॥ ଆନନ୍ଦ ହୋଇ ସାଧବ ବାଳକେ । ବେଢ଼ି ଛନ୍ତି ଅନେକ ଲୋକେ ॥ କେ ପୋଥି ଧେନିଣ ଗାଉଛି ଗୀତ । କେଉଁ ପୁଅଗୋଟି ଖାଉଛି ଭାତ । କେଉଁ ପୁଅଗୋଟି ବାଳକ ସଙ୍ଗେ । ଖେଳଘର କରି ନାଚଇ ରଙ୍ଗେ । କେଉଁ ପୁଅଗୋଟି ଗୋଳ କରୁଛି । କେ କୋଳେ ବସିଣ ଦୁଧ ଖାଉଛି ॥ ତାହା ଦେଖି ଦାସୀ ବହୁଡ଼ି ଯାଇ । ଶାଳାବନ୍ତି ଆଗେ ସକଳ କହି ॥ ତାହା ଗୋ କମ୍ପାଇ ମରିବେ ମାଏ । ଘରେ ଖେଳୁଛନ୍ତି ସକଳ ପୋଏ ॥ ଶୁଣି ଶାଳବନ୍ତି କପାଳେ ମାରି । ପୋଭିଲି ଆଗେ ମୋ ନାମ ମତେ ଭ୍ରାନ୍ତି ॥ ଏହି ସମୟେ ତହିଁ ମନ୍ତ୍ରୀବର । ଘୋଡ଼ାରେ ଚଢ଼ି ମିଳିଲା ସତ୍ୱର ॥ ପୁଅଙ୍କ ମରିବା ବରଷ ଯାକ । ଗୁପତେ ମନ୍ତ୍ରୀ ଶୁଣିଲା କେତେକ ॥ ବହୁତ ଜିଜ୍ଞାସ କଲା ତାହାକୁ । ବୋଇଲା କମ୍ପା ମାରି ବାଳକଙ୍କୁ ପୂର୍ବ ଦୋଷେ ମରୁଛି ହୋଇଅଛୁ । ଏବେ ବାଳକ ମାରିବୁ ବୋଲୁଛୁ ॥ ତାର କରମେ ହେଲେ ଏତେ ପୁତ୍ର । ତୁ କର୍ମ ଦେଖି ହେଲୁ କାଠ ଭୂତ ॥ ଭଉଣୀ ସିନା ବୟସରେ ସାନ । କର୍ମକୁ ଏକା ବଡ଼ କରିମାନ ॥ ଏବେ ତାକୁ ଗୁଳ କରିବା ସେବା । ସେବ କଲେ ପୁତ୍ର ଦାନ ପାଇବା ॥ ମନ୍ତ୍ରୀ ଶାଳାବନ୍ତି ସେ ଦୁହେଁ ଗଲେ ସାଧବାଣୀ ଘରେ ପ୍ରବେଶ ହେଲେ । ସନ୍ତୋଷ ହୋଇ ସାଧବାଣୀ ମନ । ଭଉଣୀକୁ କହେ ପୂର୍ବ ଘଟନ ॥ ଆଲୋ ଶାଳା-ବନ୍ତୀ ବଡ଼

ଭଉଣୀ । ପୂର୍ବ ଜନ୍ମେ ମୋର କଥା ନ ମାନ । ଦୁତିଆ ଓଷାରେ କୋରଡ଼େ ପଶି । ଖାଇଲୁ ତୁ ହାଡ଼ ମାଉଁସ ଘଣି ॥ ସେହି ଦୋଷେ ତୁହି ମଡ଼ଛୁ ହେଲୁ । ପୁତ୍ର ମୁଖ କେବେ ତୁ ନ ଦେଖିଲୁ । ମୋ ପୁଅ ମାରିଲୁ ବହୁତ ଥର । ଦୁତିବାହନ ଯେ ସହାୟ ମୋର ॥ ଅନେକ ଥର ସେ ବଞ୍ଚାଇ ଦେଲେ । କାଲି ରାତ୍ରେ ସ୍ୱପ୍ନେ ମୋତେ କହିଲେ ॥ କହଇ ଆମ୍ଭେ ଶୁଣ ଶାଳାବନ୍ତି । ଯେବେ ହୋଇବୁ ଧନ ପୁତ୍ରବନ୍ତି ॥ ଅତି କଷ୍ଟରେ ଏ ଦୁତିଆ ଓଷା । କଲେ ନଷ୍ଟପ୍ର ପାଲଟିବ ଦଶା ॥ ଦୁତିବାହନ ଏ ଧର୍ମ ପୁରୁଷ । ସୁର ଅସୁର ଯେ ତାଙ୍କର ଦାସ । ତେଣୁ ସେ ଦୁତିବାହନଙ୍କୁ ଆଶ ।ଗୀତେ ଭଣିଲେ ପୁରୁଷୋତ୍ତମ ଦାସ ।

୪୦ଃ

## ଏକବିଂଶ ଛାନ୍ଦ

ଏଥୁ ଅନନ୍ତରେ ଶୁଣ କାହାଣୀ । ଓଷା କରାଇଲା ସାନ ଭଉଣୀ ॥ କାଷ୍ଟ କରି କଲା ଦୁତିଆ ଓଷା । ପାଲଟିଲା ଅତି ଘୋର ଦୁର୍ଦ୍ଦଶା ॥ ଭଉଣୀ ପାଶେ ଜଗିଣ ରହିଲା । କାହିଁ ଅନସୂମ କହୁ ହୋଇଲା ॥ କ୍ଷୁଧାରେ ଆକୁଳ ମନ୍ତ୍ରୀ ରମଣୀ । ଜଗିଣ ରହିଲା ସାନ ଭଉଣୀ ॥ ପୂଜିଲା ଏକୋଇଶ ଦ୍ରବ୍ୟ କରି । ପୂର୍ବ କଥାମାନ ମନେ ସୁମରି । ପୂଜିବା ବେଳେ ହେଲେ ପରଶନ । ଧନୁଶର ଘେନି ଦୁତିବାହନ ॥ ବରଷ ସତର ହୋଇ କୁମର । ଯୁଇକାଠ ଧନୁ ସେ କାଠଶର ॥ ବିନ୍ଧିଲେ ଶାଳାବନ୍ତି ଉପରକୁ । ଉଠ ଉଠ ପୁତ୍ର ବୋଲି ତାହାକୁ । ସେ କାଣ୍ଡ ବାଜି ଶାଳାବନ୍ତି ଅଙ୍ଗ । ମଡ଼ଛୁ ଦୋଷ ହେଲା ତହୁଁ ଭଙ୍ଗ ॥ ଯେତେବେଳେ ଏହୁ କଥା ଶୁଣିବ । କାଣ୍ଡ ମାରିବାକୁ ସଯୋଗୀ ହେବ ॥ ଶାଳାବନ୍ତି ସାଧବାଣୀ ଯେ ଦୁଇ । ଦୁତିବାହନ ମନ୍ତ୍ରୀ ଘରି ହୋଇ ॥

ଘୁଙ୍କିଣ ରଖିଲେ କୋଠିର ପାଖେ । ସେ ବିଧିବିଧାନ କରି ବିଶେଷେ ॥ ସେ ଦୁତିବାହନ ହେଲେ ପ୍ରସନ୍ନ । ଦେଲେ ଲଗାଇ ପୂଇ ଶରାସନ ॥ ମୂର୍ଦ୍ଧ ଜନମ କହିଲେ ଆଗେ । ଚିଲ ଶିଆଳ କଲେ ପେଟେ ରଙ୍ଗେ ସେଠାରେ ସେ ଦୁହେଁ ମାଗିଲେ ବର । ଚିଲ ଶିଆଳ ଥିଲେ ସର୍ବ କାଳ ॥ ଯେ ଏହି ସଂସାରେ ଓଷା କରିବ । ଚିଲ ଶିଆଳ ପୂଜା ପାଉଥିବ ॥ କଥା ରହିବ ଆଜ ସର୍ବଦନ । ସତ୍ୟ କରାଇଲେ ଦୁତିବାହନ ॥ ସେ ହନୁ ତାଙ୍କ ଗୁଣ ହେଲା ଗାଥା । ଦୁତିଆ ନାମେ ଏ ଓଷା ବ୍ୟବସ୍ଥା ॥ ମନ୍ତ୍ରୀ ଭାରିଯା ଯେ ଏ ଓଷା କଲା । ଧନବନ୍ତ ପୁତ୍ରବନ୍ତ ହୋଇଲା ॥ ତାଙ୍କ ଗୁଣ ଯେଣୁ ହେଲା କରୁଣୀ । ଶୁଣି ସର୍ବ ଦୋଷ ତରି ତରୁଣୀ । ଦୁଇ ଭଉଣୀଙ୍କ ବ୍ରତ ବିଶେଷ । ଶୁଣି ସର୍ବଜନ ମନକୁ ତୋଷ ॥ ଓଷା କୋଠିରେ ଝୁଙ୍ଗି ଶିଖିଫଳ । ରଖିଲେ ପହେ କାହାଳିଆ ଜଳ ॥ ଓଷା ପୂଜାସାରି ଘରକୁ ଗଲେ । ଏକ ଶଯ୍ୟା ହୋଇ ଦୁହେଁ ଶୋଇଲେ ॥ ଏମନ୍ତ ରଜନୀ ହୋଇଲା ଶେଷ । କୋଠି ପାଖେ ଯାଇ ହେଲେ ପ୍ରବେଶ ॥ ଚିଲ ଶିଆଳକୁ ହାତେ ରେ ଘେନ । ନଦୀକୁ ଚଳିଲେ ଦୁଇ ଭଉଣୀ ॥ ଶିରେ କାହାଳିଆ ପାଣି ଇଢ଼ିଲେ । ବିଧିରେ ପୂଜା ବନ୍ଦାପନା କଲେ ॥ହସ୍ତରେ ତୋଳିଣ ଅତି ସଧୀରେ । ଦୁହିଁଙ୍କି ଭସାଇ ଦେଲେ ନଦୀରେ । ଖୋଜିଲେ ପୁଣି ସେ ନଦୀ ଭିତରେ । କୁମର କାମନା କରି ମନରେ ॥ ପାଇଲେ ତହୁଁ ତ ଣା ଗୋଟା ସାତ । ରାଣୀ ସେବା କଲେ କରିଣ ତତ୍ତ୍ୱ ॥ ଗଙ୍ଗାମୁଗ ଆଦି ପ୍ରସାଦ ଯେତେ । ବାଣ୍ଟି ଦେଲେ ପୁଅ ଝିଅଙ୍କ ହାତେ । ସ୍ନାନ ବିଧି ସାରି ଗୃହେ ମିଳିଲେ । ନାନା ଆୟୋଜନ ବିଧାନ କଲେ । ଏଥୁ ଅନ୍ତରେ ପାକଶାଳା ବିଧାନ । କଲେ ନାନାଫଳେ ନାନା ବ୍ୟଞ୍ଜନ ॥ ପାୟସ ପିଷ୍ଟକ ଆଦି ପୁଣି । ଦେବଯୋଗ୍ୟ ପାକ କଲେ ସେ ଜାଣି । ଚିଲ ଶିଆଳେ କଲେ ନୈବେଦ୍ୟ । ବନ୍ଧୁକୁଟୁମ୍ବକୁ କଲେ ଅର୍ଚ୍ଚନ ।

ଉତ୍ତମ ଖାଦ୍ୟ ପାନ ତାଙ୍କୁ ଦେଲେ । ଶେଷରେ ପୁଣି ଆପଣେ ଭୁଞ୍ଜିଲେ ॥ ଏ ରୂପେ ସାଧବାଣୀ ଚନ୍ଦ୍ର ପାଇଁ । ଓଷା ବିଧାନକୁ ଦେଲା କରାଇ ॥ ଏଥୁ ଅନ୍ତରେ କିଛି ଦିନ ଗଲା । ଶାଳାବନ୍ତୀ ଗର୍ଭ ବାସ ହୋଇଲା ॥ ଜନମ ହେଲା ତାର ଏକ ସୁତ । ତେଣୁ ଅଧିକ ତା ବଢ଼ିଲା ଚିତ୍ତ ॥ ଆଉ ବରଷକୁ ମନ୍ତ୍ରୀର ନାରୀ । ବ୍ରତ ପୂଜିଲା ଅତି କାଙ୍କ୍ଷା କରି ॥ ଏ ରୂପେ ତାର ସାତ ପୁତ୍ର ହେଲେ । ଯମଙ୍କି ତାଙ୍କୁ ଗୃହିଁ ନ ପାରିଲେ ॥ ଦୁତିବାହନ ଓଷା ପୁଣ୍ୟ ଫଳେ । ନ ଗ୍ରହ ଖଣ୍ଡିଲେ ନ ବୃଦ୍ଧି ଜଳେ ॥ ଶାଳାବନ୍ତୀ ବଡ଼ ହରଷ ହୋଇ ସୁଖେ ରାଜ୍ୟ କଲେ ସେ ସାତ ଭାଇ ॥ ଶାଳାବନ୍ତୀ ସେହିପରି ହରଷ । ବ୍ରତ କରୁଥାନ୍ତି ପ୍ରତି ବରଷ ॥ ଏମନ୍ତେ କେତେ କାଳ ରାଜ୍ୟ କଲେ । ଅନ୍ତେ ଯାଇ ସ୍ୱର୍ଗପୁରେ ବସିଲେ । ଦୁତିବାହନଙ୍କ ଚରଣେ ଆଶ । ପ୍ରସ୍ତାବେ କହେ ପୁରୁଷୋତ୍ତମ ଦାସ ।୪୫।

—○—

## ଦ୍ୱାବିଂଶ ଛାନ୍ଦ

ଏମନ୍ତ ଭାବରେ ଦୁତିଆ ଓଷା । ଦୁତିବାହନଙ୍କ ପୂଜବ ଆଶା ॥ ନଡ଼ିଆକେଳା ଫଳ ଭାଙ୍ଗିବ ପୁଣି । ଅର୍ଘ କରି ଦେବ ତାହାର ପାଣି ॥ ସୁବ୍ରାହ୍ମଣଙ୍କୁ ବରଣ କରିବ । କଥା ଶୁଣି ଶୁଣି ଦକ୍ଷିଣା ଦେବ ॥ ଦକ୍ଷିଣା ନ ଦେଲେ ଘରକୁ ଯାଏ । ଓଷା କରି ଫଳ ସେହୁ ନ ପାଏ ॥ କୋଠି ଥାପି ସେହୁ କଥା କହିବ । କୋଠିରେ ଯେତେ ଦ୍ରବ୍ୟ ଥିବ ନେବ । ଏକୋଇଶ ଦ୍ରବ୍ୟ ଓଷାରେ ଯେତେ ତଣ୍ଡ ବ୍ରାହ୍ମଣଙ୍କୁ ଦେବ ସୁଚିତ୍ତେ । ଓଷା ପୂଜା କରି ଘରକୁ ଯିବ । କିଛି ନ ଖାଇ ଉପବାସେ ଥିବ ॥ ଏ ଓଷା ସାମଗ୍ରୀ ଖାଇବ ଯାହିଁ ବହୁଦ୍ଧିଁ ସ୍ନାନ କରିବ ସେ ଯାଇ ॥ ରନ୍ଧିବ ଆସି ବିବିଧ ବ୍ୟଞ୍ଜନ ପୂଜିବା ଦ୍ରବ୍ୟ ବାଣ୍ଟିବା ବିଧାନ ॥ ଏମନ୍ତ ପ୍ରକାରେ ଦୁତିଆ ବିଧି । କାଙ୍କ୍ଷା କଲା ନରା ପାଇବ ନିଧି ॥ ଚଲ ଶିଆଳ

ଯେ ଏ ଓଷା କଲେ । ଦେଖିଲଟି କ ଦଶା ପାଇଥିଲେ ॥ ତେଣୁ
ଏ ଓଷା ଯେ ପ୍ରତିଷ୍ଠା କରିବ । ଅକ୍ଷୟ ପୁତ୍ର ସମ୍ପଦ ପାଇବ ॥ ଯେ
ବନ୍ଧ୍ୟା ଯେବା ମୃତ ବତ୍ସା ନାରୀ । ଅନେକ ସୁତ ହୁଅନ୍ତି ତାଙ୍କର ॥
କାଷ୍ଟା ବଳେ କୁଷ୍ଠାଦି ରୋଗ ଯେତେ । ନାଶ ହୁଅନ୍ତି ମହାବ୍ରତେ
ଯେ ଯାହା ବଚ୍ଛିର କରେ ଏ ଓଷା । ଅଭରସା ନୋହେ ପାଏ
ଭରସା ॥ ନିନ୍ଦାକରନ୍ତି ଯେ ପୁରୁଷ ନାରୀ । ତାଙ୍କ କୁମରେ ଯାନ୍ତି
ଯମପୁରୀ । ମନେ ହେଁ କେବେ ନିନ୍ଦା ନ କରିବ । କଲେ ସାତ
ଜନ୍ମ ବନ୍ଧ୍ୟା ହୋଇବ ॥ ପ୍ରଶଂସା ସ୍ତୁତିଗୋକରଇ ଯେହୁ । କେବେ
ଅପୁତ୍ରି ନୁହଇ ସେହୁ ॥ ଓଷାକଥା ଅଧା ଶୁଣି ଯେ ଯଇ ।
ସାତ ଜନ୍ମ ସେ ଅପୁତ୍ରିକ ହୋଇ ॥ ତେଣୁ ଅଧେ ଶୁଣିକେବେ
ନ ଯିବ । ସଇଲେ ଯେଯାହା ମତେ ଉଠିବ । ଶୁଣି ଗୋ ସନ୍ତୋଷ
ସୁଜନେ ହେବ । ଆନନ୍ଦରେ ଜୟ ଜୟ ବୋଲିବ ॥ ମୁଖରେ ପୁଣି
ହୁଳ ହୁଳ ଦେଇ । ଗମନ କରିବ ଆନନ୍ଦ ହୋଇ ॥ ବଳଷ୍ଟ୍ରି ରୂପ
ଦୁତିବାହନ । ସହଜେ ତ ନିରଞ୍ଜନ ନନ୍ଦନ ॥ ଦୁତିବାହନ ଅତେତର
ଗତି । ରଚ୍ଛନ୍ତି ପୁରାଣେ ଯା ନାମ ଖ୍ୟାତି ॥ ସର୍ବ ବ୍ରାହ୍ମଣ ଶ୍ରେଷ୍ଠ
ପ୍ରୀତି ଦୋଷେ । ଏ ଭେଦ ହୋଇଲେ ମୂଷଳ ଅଂଶେ ॥ ଓଷାକରି
ହିନ୍ଦୁ ମୁସଲମାନ । ବିରୋଧ ଆଉ ନ ଧରିବ ମନ ॥ ଦୁଇ ଦଳରେ
ଏକ୍ଷ ଭାବ ରହୁ । କାହାରି ମନରେ ଆଶଙ୍କା ନୋହୁ ॥ ଉପହାସ
କେବେ ନ କର ନର । ମନେ ମନେ ଦୂତିବାହନ ସ୍ମର ॥ ଯେହୁ
ଉପହାସ କରିବ ଏଥି । ତାଙ୍କୁନେଇ ଯମ ଦିଅଇ ଶାସ୍ତି ॥ ଏଣୁ
ସେ ଦୁତିବାହନକୁ ଆଶ । କଥା ଭଣିଲେ ପୁରୁଷୋତ୍ତମ ଦାସ ॥

—:0:—

ମୁଦ୍ରାକର—ଶ୍ରୀ ହରିସଂକୀର୍ତ୍ତନ ପ୍ରେସ୍, ଓଡ଼ିଆ ବଜାର କଟକ-୧

ସମସ୍ତ ପ୍ରକାର ପୁସ୍ତକ ବେପାରୀମାନଙ୍କୁ ବଜାର ଅପେକ୍ଷା ସୁବିଧା ଦରରେ ଦିଆଯାଏ । ଥରେ ପରୀକ୍ଷା କରନ୍ତୁ ।

---

## କାନ୍ଦଣା

| | |
|---|---|
| ବିବାହ କାନ୍ଦଣା ଲହରୀ | ଟ ୦-୨୫ |
| କାନ୍ଦଣା ଲହରୀ ବଡ଼ | ଟ ୦-୨୫ |
| ,, ,, ସାନ | ଟ ୦-୩୫ |
| ଜେମାଦେଈଙ୍କ କାନ୍ଦ | ଟ ୦-୩୦ |
| ଶଶୀଦେଈଙ୍କ କାନ୍ଦ | ଟ ୦-୩୦ |
| କୌଶଲ୍ୟା ରୋଦନ | ଟ ୦-୩୦ |
| ରାଧାଙ୍କ ଶୋକ | ଟ ୦-୩୦ |
| ସୀତା ବିଳାପ | ଟ ୦-୨୦ |
| ଯଶୋଦା ବିଳାପ | ଟ ୦-୩୦ |
| ଲକ୍ଷ୍ମୀ ନାରାୟଣ କଳି | ଟ ୦-୩୦ |
| ହର ଅର୍ଜ୍ଜୁନ କଳି | ଟ ୦-୫୦ |
| ହନୁ ଅର୍ଜ୍ଜୁନ କଳି | ଟ ୦-୩୦ |
| ଶାଶୁ ବୋହୂ କଳି | ଟ ୦-୧୫ |

## ଓଷା, ବ୍ରତ, ସ୍ତୁତି ଓ ମେଳା

| | |
|---|---|
| ଲକ୍ଷ୍ମୀ ପୁରାଣ | ଟ ୦-୨୦ |
| ଅନନ୍ତ ବ୍ରତ | ଟ ୦-୨୫ |
| କେଦାର ବ୍ରତ | ଟ ୦ ୧୫ |
| ଜନ୍ମାଷ୍ଟମୀ ବ୍ରତ | ଟ ୧-୦୦ |
| ବଡ଼ ମହାକାଳୀ ବ୍ରତ | ଟ ୦-୧୫ |
| ବିନାୟକ ବ୍ରତ | ଟ ୦-୨୦ |
| ନାଗଲ ଚତୁର୍ଥୀ ବ୍ରତ | ଟ ୦-୪୦ |
| ରବି ନାରାୟଣ ବ୍ରତ | ଟ ୦-୪୦ |

| | |
|---|---|
| ଗଣ୍ଡ ଦାମୋଦର ବ୍ରତ | ଟ ୦-୮୦ |
| ସଙ୍କଟ ଚଉଠ ବ୍ରତ | ଟ ୦-୪୦ |
| ସୋମନାଥ ବ୍ରତ | ଟ ୦.୭୦ |
| ସୁଦଶା ବ୍ରତ | ଟ ୦.୮୦ |
| ସାବିତ୍ରୀ ବ୍ରତ | ଟ ୦-୮୦ |
| ଶିବବଷୀ ବ୍ରତ | ଟ ୦-୪୦ |
| ରାଧାଷ୍ଟମୀ ବ୍ରତ | ଟ ୦-୭୫ |
| ବାଲ ତୃଷ୍ଣପୂ ବ୍ରତ | ଟ ୦-୩୦ |
| ଗୁରୁ ପଞ୍ଚମୀ ବ୍ରତ | ଟ ୦-୮୦ |
| ଶୁକ୍ରବାର ବ୍ରତ | ଟ ୧-୨୫ |
| ଅଲଣା ଓଷା | ଟ ୦-୨୫ |
| କୁଆଁର ପୂନେଇଁ ଓଷା | ଟ ୦-୮୦ |
| ଖୁଦୁରୁକୁଣୀ ଓଷା | ଟ ୦-୭୦ |
| ଗୁରୁବାର ଓଷା | ଟ ୦-୬୦ |
| ବୁଢ଼ଲ ଭଜା ଓଷା | ଟ ୦-୭୦ |
| ଚୈତ୍ର ମଙ୍ଗଳବାର ଓଷା | ଟ ୦-୫୦ |
| ଜହ୍ନି ଓଷା | ଟ ୦-୨୫ |
| ଷଣ୍ଡ ଓଷା | ଟ ୦-୩୦ |
| ପୂର୍ଣ୍ଣମୀ ଓଷା | ଟ ୦-୨୫ |
| ବଡ଼ ଓଷା | ଟ ୦ ୬୦ |
| ବାଟ ଓଷା | ଟ ୦-୫୦ |
| ବୁଧେଇ ଓଷା | ଟ ୦-୫୦ |
| ଭାଇ ଜାଉନ୍ତିଆ ଓଷା | ଟ ୦ ୭୫ |
| ଶନି ଓଷା | ଟ ୦-୬୦ |
| ବେଣାଟି ଆଓଷା | ଟ ୦ ୩୦ |

